# ଗ୍ରାମୋନ୍ନତର ରୋମାଞ୍ଚକର କାହାଣୀ

ଡକ୍ଟର ମାନସିଂହ

# ଗ୍ରାମୋଜାଟର

# ରୋମାଞ୍ଚକର କାହାଣୀ

Stay on Stranger

ପୁସ୍ତକର ଅବଲମ୍ବନରେ


ଲେଖକ—

**ଡକ୍ଟର ମାୟାଧର ମାନସିଂହ**



ପ୍ରଥମ ମୁଦ୍ରଣ

ପ୍ରକାଶକ—

**ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ପ୍ରାଃ ଲିଃ**

ବ୍ରହ୍ମପୁର : କଟକ

୧୯୫୭

ମୂଲ୍ୟ ଏକ ଟଙ୍କା

# ଗ୍ରାମୋନ୍ନତିର ରୋମାଞ୍ଚକର କାହାଣୀ

## — ପ୍ରାରମ୍ଭିକ —

ଆମେରିକାର ବିଶ୍ୱ-ବିଖ୍ୟାତ ମାସିକ ପତ୍ର 'ରିଡରସ୍ ଡାଇଜେଷ୍ଟ'ରେ ପ୍ରତିମାସରେ ଗୋଟିଏ ଉତ୍ତମ, ଜନପ୍ରିୟ, ଶିକ୍ଷଣୀୟ, ସମସାମୟିକ ପୁସ୍ତକର ସାରାଂଶ ପ୍ରକାଶିତ ହୋଇଥାଏ । 'ରିଡରସ୍ ଡାଇଜେଷ୍ଟ'ର ଏହି ଅଂଶଟି ମତେ ସବୁଠାରୁ ଭଲ ଲାଗେ । ଏହି ବର୍ଷର ୧୯୫୮ ଫେବୃୟାରୀ ସଂଖ୍ୟାରେ 'ରିଡରସ୍ ଡାଇଜେଷ୍ଟ'ରେ 'Stay on Stranger' ବା "ରହିଯାଅ ବିଦେଶୀ" ନାମକ ଆମେରିକାରେ ସଦ୍ୟ-ପ୍ରକାଶିତ ଏକ ପୁସ୍ତକର ସାରାଂଶ ପଢ଼ିବାକୁ ପାଇଲି । ଦେଖିଲି ଯେ ଏହା ଆମେରିକାର ଏକ ଅତ୍ୟନ୍ତ ଅନୁନ୍ନତ ଅଞ୍ଚଳର ଉନ୍ନୟନର ଏକ ରୋମାଞ୍ଚକର କାହାଣୀ । ତ୍ରିଶ ବର୍ଷ ତଳେ ବୋଷ୍ଟନ ନଗରର ଏକ ଦୁର୍ବିପାକଗ୍ରସ୍ତା ଶିକ୍ଷିତା ଓ ଧନୀ-କନ୍ୟା ଆମେରିକାର କେଣ୍ଟକୀ ଷ୍ଟେଟ୍‌ର ଏହି ଅଗମ୍ୟ, ଅନୁନ୍ନତ ଓ ଅସଭ୍ୟ ରୁକ୍ଷ ପାହାଡ଼ିଆ ଅଞ୍ଚଳକୁ ଆଶ୍ରୟ ପାଇଁ ଆସିଥିଲେ । ସେ

ସମୟରେ ସେ ଅଞ୍ଚଳରେ ପ୍ରାୟ ସମସ୍ତେ ନିରକ୍ଷର ଥିଲେ, ଏପରିକି ସେ ଅଞ୍ଚଳର ପୋଷ୍ଟ୍ ମିଷ୍ଟ୍ରେସ୍ ବି ପଢ଼ି ଜାଣି ନ ଥିଲା । ପଚିଶ ବର୍ଗ ମାଇଲ ଧରି ସେ ଅଞ୍ଚଳରେ ଗୋଟିଏ ହେଲେ ହାଇସ୍କୁଲ୍ ନ ଥିଲା । ପ୍ରାଇମେରୀ ସ୍କୁଲ ଦୂରଦୂରାନ୍ତରେ ଗୋଟିଏ ଦୁଇଟି ଜର-ଜୀର୍ଣ୍ଣ ଅବସ୍ଥାରେ ପଡ଼ିଥାନ୍ତି । ସେଇସବୁ ସ୍କୁଲର ମାନେଜିଂ କମିଟି ମେମ୍ବରମାନେ ଟିପ ଚିହ୍ନ ଦେଇ ଦସ୍ତଖତ କରୁଥିଲେ । କେହି-ହେଲେ ଜୋତା ପିନ୍ଧୁ ନ ଥିଲେ । କୌଣସି ଘରେ ଝରକା ନ ଥିଲା । ଲୋକେ କଥା କଥାକେ ନଗ୍ନନଷ୍ଟ ହୋଇ ମରୁଥିଲେ । କଠୋର ଦାରିଦ୍ର୍ୟ ଭିତରେ ହିଁ ଜନସଂଖ୍ୟା ବଢ଼ି ଚାଲିଥିଲା । ପ୍ରତି ପରିବାରରେ ୮, ୧୦, ୧୧, ୧୨ କରି ପିଲା । ଏଇପରି ଭାବରେ ସେହି ପାର୍ବତ୍ୟ ଅଞ୍ଚଳ ସଭ୍ୟ ଜଗତରୁ ଏକାବେଳକେ ନିଜକୁ ବିଚ୍ଛିନ୍ନ ରଖି ନିଜର ହୀନ ଅସଭ୍ୟ ଜୀବନରେହିଁ ସନ୍ତୁଷ୍ଟ ରହୁଥିଲା । ସେ ଅଞ୍ଚଳର ଲୋକେ ଆମେରିକାର ଅନ୍ୟ ଅଞ୍ଚଳର ଲୋକଙ୍କୁ 'ଫରନର୍' ବା 'ବିଦେଶୀ' ବୋଲି କହୁଥିଲେ ଏବଂ ନିଜ ଅଞ୍ଚଳ ଛଡ଼ା ଆମେରିକାର ଅବଶିଷ୍ଟ ରାଜ୍ୟକୁ 'ଆମେରିକା' ବୋଲି ଅଭିହିତ କରୁଥିଲେ । ବୋଷ୍ଟନର ସେହି ମହିଳା ମିସେସ୍ ଆଲିସ୍ ଲୟଡ୍ ପ୍ରଥମେ ଏ ଅଞ୍ଚଳରେ 'ବିଦେଶୀ' ଥିଲେ । କିନ୍ତୁ ସେହି ରୁଗ୍ଣା ଶ୍ୱେତାଙ୍ଗିନୀ ସେହି ରାସ୍ତାଘାଟହୀନ ଅସଭ୍ୟ ଅଞ୍ଚଳରେ ଗତ ଚାଳିଶବର୍ଷ ଧରି ରହି, ସେଇ ଅଞ୍ଚଳକୁ ଜନ୍ମାନ୍ତର ଦେଇ ପାରିଛନ୍ତି । ମିଷ୍ଟର ଏସ୍. ଓଡନ୍ ନାମକ ଲେଖକ 'Stay on Stranger' ବା 'ବିଦେଶୀ ରହିଯାଅ' ପୁସ୍ତକରେ ଏହି ରୋମାଞ୍ଚକର କାହାଣୀ ବର୍ଣ୍ଣନା କରିଛନ୍ତି । ତାହା ପଢ଼ି ମୁଁ ଅଭିଭୂତ ହେଲି । ମୁଁ ବିଶେଷ ଭାବରେ ଅଭିଭୂତ ହେଲି ଏହି କାରଣରୁ ଯେ କେଣ୍ଟକୀର ସେହି ଅସଭ୍ୟ ଅଞ୍ଚଳର ରୂପାନ୍ତର ଘଟିଛି ଏକାନ୍ତଭାବରେ ସ୍କୁଲ ଭିତର ଦେଇ । ଦେଖିଲି ଯେ ଏଇତ ପୁଣି ଆମ ଭାରତବର୍ଷର, ଆମ

ଓଡ଼ିଶାର ପ୍ରଧାନତମ ସମସ୍ୟା । ଆମେରିକାର ଏକ ଅଞ୍ଚଳରେ ଜଣେ ବୃଦ୍ଧା ରୁଗ୍‌ଣା ମହିଳା ଏ ସମସ୍ୟାର ସମାଧାନ କରିପାରିଛି ଚାଳିଶ ବର୍ଷ ଭିତରେ । ଏହି କାହାଣୀ ଆମ ଦେଶରେ ସୁପ୍ରଚାରିତ ହେବା ଉଚିତ, ଯେପରି କି ଆମ ଦେଶର ଜନନାୟକ, ଶିକ୍ଷାବିତ୍ ଓ ଶିକ୍ଷକଗଣ ଏଥିରୁ ଦିଗ୍-ଦର୍ଶନ ଓ ଅନୁପ୍ରେରଣା ପାଇପାରିବେ ।

ଏହି ଉଦ୍ଦେଶ୍ୟରେ ମୁଁ ମିସେସ୍ ଲୟୁଡ୍‌ଙ୍କ ପ୍ରତିଷ୍ଠିତ ଓ ମିଷ୍ଟର ଉଠନଙ୍କ ପୁସ୍ତକରେ ବର୍ଣ୍ଣିତ କାନେ ଗୋଷ୍ଠୀ ଯୋଜନାକେନ୍ଦ୍ରସ୍ଥ କାର୍ଟିନ କଲେଜର ପ୍ରିନ୍‌ସିପାଲଙ୍କୁ ଏକ ଚିଠି ଲେଖିଲି । ଏଥି ଅନୁରୋଧ କରି ଯେ, ମୁଁ ମିଷ୍ଟର ଉଠନଙ୍କ ମୂଳ ବହିର ଏକ କପି ଯେପରି ପାଏ ଓ ମିଷ୍ଟର ଉଠନ ସେହି ବହିଟିକୁ ଓଡ଼ିଆରେ ଅନୁବାଦ କରିବା ପାଇଁ ମତେ ଯେପରି ଅନୁମତି ଦିଅନ୍ତି । ଇତିମଧ୍ୟରେ ମୁଁ କାନେ କଲେଜର ପ୍ରିନ୍‌ସିପାଲ ଓ ମିଷ୍ଟର ଉଠନଙ୍କଠାରୁ ପ୍ରୀତି ଓ ସଦିଚ୍ଛାପୂର୍ଣ୍ଣ ସୁନ୍ଦର ଉତ୍ତର ପାଇ ସାରିଛି ଏବଂ ଉଠନଙ୍କଠାରୁ ତାଙ୍କ ପୁସ୍ତକର ଏକ କପି ମଧ୍ୟ ଉପହାର ପାଇ ସାରିଛି । ଆମ ଦେଶରେ ବର୍ତ୍ତମାନ ଗ୍ରାମୋନ୍ନତିକର୍ମ ନାନାଭାବରେ ଚାଲିଛି । ଗାନ୍ଧି ସ୍ମାରକ-ନିଧି ଓ କସ୍ତୁରବା ପାଣ୍ଠି ସାହାଯ୍ୟରେ ଶତ ଶତ ଗ୍ରାମସେବକ ଓ ଗ୍ରାମସେବିକା ଯଥୋପଯୁକ୍ତ ତାଲିମ ପାଇ ଦୂରଦୂରାନ୍ତର ପଲ୍ଲୀ ଅଞ୍ଚଳକୁ ଅନୁନ୍ନତ ପଲ୍ଲୀବାସୀ ପଲ୍ଲୀବାସିନୀମାନଙ୍କୁ ଅଜ୍ଞତାର ନାଗ ପାଶରୁ ମୁକ୍ତ ଦେବା ପାଇଁ ଅଗ୍ରସର ଓ ବଦ୍ଧପରିକର । ଏଣେ ଆମ ଦେଶର ଶାସକ, ଚିନ୍ତାନାୟକ ଓ ଶିକ୍ଷାନାୟକମାନେ ଆମ ଦେଶର ସ୍କୁଲ କଲେଜସବୁକୁ ଜାତିର ପ୍ରକୃତ ଗଠନରେ, ଗଣ-ଦେବତାର ପ୍ରକୃତ ଊର୍ଦ୍ଧ୍ୱଗତିରେ କିପରି ନିୟୋଜିତ କରାଯାଇ ପାରିବ ସେଥିପାଇଁ ବ୍ୟାକୁଳ । ଦେଶର ଆଶୁ କଲ୍ୟାଣରେ ବ୍ୟାକୁଳତାବଶତଃ ବହୁପନ୍ଥୀ ଯୋଜନାରେ ଧାବମାନ ହେଉଥିବାରୁ ସେମାନଙ୍କୁ ହୁଏତ କେହି

କେହି ଜଗନ୍ନାଥ ଓ ଉଦ୍‌ଭ୍ରାନ୍ତ ବୋଲି ମନେ କରୁଛନ୍ତି । ମୋର ବିଶ୍ୱାସ ଏ ସମସ୍ତେ ତାଙ୍କ କଲେଜର ପ୍ରେମାଞ୍ଚଳର କାହାଣୀରୁ କଳ୍ପନାଶକ୍ତିରୁ ଶିକ୍ଷା, ନିର୍ଦ୍ଦେଶ ଓ ପ୍ରେରଣା ପାଇବେ । ସେହିମାନଙ୍କ ପାଇଁ ହିଁ ମୁଁ ମିଷ୍ଟର ଜନ୍‌ସନଙ୍କ ବହିଟି ଓଡ଼ିଆରେ ତର୍ଜମା କରିବାକୁ ଯାଉଛି । ଏ ଅନୁବାଦ ଅବଶ୍ୟ ପୂର୍ଣ୍ଣ ଅକ୍ଷରକ ଅନୁବାଦ ହେବ ନାହିଁ । କାରଣ ଏଥିରେ ଆମେରିକା ସମାଜର ଅନେକ କଥା ଘଟନା ବର୍ଣ୍ଣିତ ଯାହା ଏ ଦେଶର ଲୋକେ ଆଦୌ ବୁଝିପାରିବେ ନାହିଁ । ମୁଁ କେବଳ ସେହି ସେହି ଅଂଶ ଅନୁବାଦ କରିବି, ଯାହା ଆମ ଦେଶର ଲୋକେ ପଢ଼ିବାରେ ଆନନ୍ଦ ପାଇବେ ଓ ଶିଖିବେ । ବର୍ତ୍ତମାନ ପାଠକମାନଙ୍କର କୌତୁହଳାର୍ଥେ ମୋର ତାଙ୍କ କଲେଜ ପ୍ରିନ୍‌ସିପାଲଙ୍କ ନିକଟକୁ ଦେଇଥିବା ପତ୍ର ଓ ମିଷ୍ଟର ଜନ୍‌ସନଙ୍କଠାରୁ ଉତ୍ତରର ଅନୁବାଦ ଦେଇ ମୋର ପ୍ରାରମ୍ଭିକ ଭାଷଣ ଶେଷ କରେଁ ।

## ମୋର ପତ୍ର

ପ୍ରିୟବନ୍ଧୁ,

୧୯୫୪ ଫେବୃୟାରୀ ସଂଖ୍ୟାର ରିଡରସ୍ ଡାଇଜେଷ୍ଟ୍ (ଭାରତୀୟ ସଂସ୍କରଣ)ରେ ମିସେସ୍ ଅଲିସ୍ ଲୟେଡ୍ ଯେପରି ଦୀର୍ଘ, ନୀରବ, ଧୈର୍ଯ୍ୟଶୀଳ, ଆନ୍ତରିକ ଚେଷ୍ଟା ଓ ତ୍ୟାଗ ବଳରେ ତାଙ୍କ ଓ ତାର ଆଖପାଖ ଅଞ୍ଚଳର ଲୋକଙ୍କର କଲ୍ୟାଣ ଉଦ୍ଦେଶ୍ୟରେ ଆପଣଙ୍କର ତାଙ୍କ କଲେଜ ପ୍ରତିଷ୍ଠା କରିଛନ୍ତି ଓ ଯେପରିଭାବରେ ତାହା ଚାଲିତ ହେଉଛି, ସେହି ବିସ୍ମୟକର କାହାଣୀ ମୁଁ ବିପୁଳ ଅନୁରାଗର ସହିତ ପାଠ କରିଛି । ଡବ୍ଲିଉ. ଏସ. ଜନ୍‌ସନଙ୍କର "ରହିଯାଅ ବିଦେଶୀ" ପୁସ୍ତକର ଏହି ସାରାଂଶଟି ପଢ଼ି ସାରିଲା ପରେ, ଗୋଟିଏ ପୂର୍ଣ୍ଣ ଅଞ୍ଚଳ ଓ ଜନଗୋଷ୍ଠୀର ଅଷ୍ଟପଞ୍ଜରର ପରିବର୍ତ୍ତନ

ଯେପରି ଭାବରେ କରାଯାଇଛି, ସେଥିପାଇଁ ସେହି ପୁଣ୍ୟପ୍ରାଣା ମହିଳା ଓ ତାଙ୍କର ଅନୁଗତ ଆପଣମାନଙ୍କୁ ମୋର ହୃଦୟର ପୂର୍ଣ୍ଣତମ ସମ୍ବର୍ଦ୍ଧନା ନ ଜଣାଇ ମୁଁ ରହିପାରୁ ନାହିଁ । ଇଣ୍ଡିଆରେ ଏକ କଲେଜର ପ୍ରିନ୍‌ସିପାଲ୍ ଭାବରେ ମୁଁ ଆପଣମାନଙ୍କ ସହିତ ସମ-ଗୋଷ୍ଠିତ୍ୱ ଭାବ ଅନୁଭବ କରୁଛି ଏବଂ ଆପଣମାନଙ୍କର ଏହି ଚମତ୍କାର ପରୀକ୍ଷାର କାହାଣୀ ମୋ ଦେଶବାସୀଙ୍କ ନିକଟରେ ଯେପରି ସୁପ୍ରଚରିତ ହେବ, ସେହି ଉଦ୍ଦେଶ୍ୟରେ ମୁଁ ମିଷ୍ଟର ଡଟନଙ୍କର ପୁସ୍ତକଟିକୁ ମୋ ମାତୃଭାଷା ଓଡ଼ିଆରେ ଅନୁବାଦ କରିବାକୁ ଚାହେଁ । ଏହିଁ ଭାଷାଟି ଭାରତର ପୂର୍ବ ପ୍ରାନ୍ତସ୍ଥ ଓଡ଼ିଶା ନାମକ ଷ୍ଟେଟରେ ଚତୁର୍ଦ୍ଦଶ ମିଲିୟନ୍ ଲୋକଙ୍କ ଦ୍ୱାରା କଥିତ ହୁଏ ଏବଂ ଏହା ଭାରତର ଚଉଦଟି ପ୍ରଧାନ ଭାଷାମାନଙ୍କ ମଧ୍ୟରେ ଏକତମ । ବର୍ତ୍ତମାନ ଏ ପୁସ୍ତକ ଇଣ୍ଡିଆରେ ମିଳି ନ ପାରେ । ତେଣୁ ଆପଣ ଦୟା କରି ଖଣ୍ଡିଏ ମୋ ନିକଟକୁ ପଠାଇବା ପାଇଁ ଅନୁରୋଧ କରେ । ଏହାକୁ ଓଡ଼ିଆରେ ଅନୁବାଦ ପାଇଁ ମିଷ୍ଟର ଡଟନଙ୍କ ଅନୁମତି ମଧ୍ୟ ମୋର ଦରକାର, ଯେହେତୁ ମିଷ୍ଟର ଡଟନଙ୍କ ସହିତ ମୋର ପରିଚୟ ନାହିଁ ଓ ତାଙ୍କର ଠିକଣା ମତେ ଜଣା ନାହିଁ । ଆପଣ ଦୟା କରି ଏ ସମସ୍ତ କରିଦେବେ ବୋଲି ଆଶା କରେ । ମୁଁ ମିସେସ୍ ଅଲିସ୍ ଲିୟୁଡ୍‌ଙ୍କର ଓ ତାଙ୍କର 'ଶାନ୍ତି-କୁଟୀର'ର ଛବି ଚାହେଁ, ପୁଣି ଗୋଷ୍ଠୀ-ଶ୍ରମରେ ଗଠିତ ଆପଣଙ୍କ କଲେଜ ଓ ତତ୍‌ସଂଲଗ୍ନ ଅନ୍ୟାନ୍ୟ ଅନୁଷ୍ଠାନମାନଙ୍କର ଛବି ମଧ୍ୟ ମୁଁ ଚାହେଁ । ଯୁକ୍ତରାଷ୍ଟ୍ରର ଏକ ଷ୍ଟେଟ ମାନଚିତ୍ରରେ ଆପଣଙ୍କ ଅଞ୍ଚଳଟି ଚିହ୍ନିତ କରିଦେବେ ଏବଂ ଅଲିସ୍ ଲିୟୁଡ୍‌ଙ୍କ ଆସିବା ପୂର୍ବେ ଓ ପରେ ତାନେ ଅଞ୍ଚଳର ଲୋକ ଓ ଘରଦ୍ୱାରର କେତେକ ଛବି ମଧ୍ୟ ମୋର ଦରକାର ହେବ । ମୁଁ ଏଠାରେ ଜଣାଇ ଦେବା ଉଚିତ ମନେ କରେ ଯେ, ଏହା ମୋ ପକ୍ଷରେ ଏକାନ୍ତଭାବରେ ଶ୍ରଦ୍ଧାର ଶ୍ରମ ।

ତେଣୁ ମିଷ୍ଟର ଡଟନଙ୍କ ପୁସ୍ତକ ସମ୍ବନ୍ଧରେ ରୟାଲ୍ଟିର କଥା ନ ଉଠାଇଲେ ହିଁ ଭଲ ହେବ ।

ମୁଁ ଆପଣଙ୍କ ନିକଟରୁ ଉତ୍ତର ପାଇବା ପାଇଁ ଗଭୀର ଅପେକ୍ଷାରେ ରହିଲି ।

## ମି. ଡଟନଙ୍କ ଉତ୍ତର

ପ୍ରିୟ ଡକ୍ଟର ମାନସିଂ,

ଜାନେ ଜୁନ୍ନାପୁର କଲେଜରୁ ମୋ ନିକଟକୁ ଆପଣଙ୍କ ପତ୍ରଟି ପଠା ହୋଇଅଛି ଏବଂ "ରହିଯାଅ ବିଦେଶୀ" ଉପରେ ଆପଣଙ୍କର ଅଗ୍ରହାନ୍ୱିତ ମତାମତ ମତେ ଗଭୀର ଆନନ୍ଦ ଦାନ କରିଛି ।

'ରହିଯାଅ ବିଦେଶୀ'କୁ ଓଡ଼ିଆରେ ଅନୁବାଦ କରିବାକୁ ମୁଁ ଆପଣଙ୍କୁ ଖୁସିରେ ଅନୁମତି ଦେଉଛି । ଏଥିରେ ଲାଭର ପ୍ରଶ୍ନ ନାହିଁ। କାର୍ଯ୍ୟରେ ଅଗ୍ରସର ହେବାପାଇଁ ମୋର ଏଇ ପତ୍ରକୁହିଁ ପ୍ରାମାଣିକ ଭାବରେ ବ୍ୟବହାର କରିପାରନ୍ତି । ମୁଁ ଅନ୍ୟ ଏକ ପାକେଟ୍‌ରେ ଆପଣଙ୍କ ନିକଟକୁ ମୋ ପୁସ୍ତକର ଏକ କପି ଡାକରେ ପଠାଇଅଛି । ତାର ଦାମ କଥା ଆପଣ ଆଦୌ ଭାବିବେ ନାହିଁ, ବରଂ ଓଡ଼ିଆରେ ବହିଟି ଛପା ହେଲେ ତା'ର ଏକ କପି ଆପଣ ପଠାଇ ପାରିଲେ ମୁଁ ଭାରି ଖୁସୀ ହେବି ।

କାନେର ଲୋକେ ଆପଣଙ୍କ ନିକଟକୁ କ ଛବି ସବୁ ପଠାଇଛନ୍ତି ମୁଁ ଜାଣେନାହିଁ । ତେବେ ମୁଁ ଆପଣଙ୍କ ନିକଟକୁ କେତେକ ଧଳା-କଳା ପ୍ରେଟ୍ ପଠାଉଛି, ଯାହାକି ଆପଣଙ୍କ କାମରେ ଆସିପାରେ । ମୁଁ ମଧ୍ୟ ଇଜ୍. ଏସ. ଏ. ର ଏକ ଗ୍ଲୋବ ମାନଚିତ୍ରରେ

ପେନ୍‌ସିଲରେ ପିପାପାସ୍ ଟେଙ୍ଗିଠି ଅବସ୍ଥିତ ତାହା ନିର୍ଦ୍ଦେଶିତ କରି ଦେଉଛୁ ।

ଆପଣଙ୍କ ପ୍ରତି ଓ ଭି. ଏମ. କଲେଜ ପ୍ରତି ମୋର ପ୍ରକୃଷ୍ଟ ଶ୍ରଦ୍ଧା ନିବେଦନ କରୁଛୁ । ଆମ୍ଭେମାନେ ମଧ୍ୟ ଗାନ୍ଧିଙ୍କୁ ଖୁବ ପସନ୍ଦ କରୁଥିଲୁ ।

ଆପଣଙ୍କର
ଡବ୍ଲ୍ୟୁ. ଏସ୍. ଓଟନ୍.

[ ପର ଅଧ୍ୟାୟରୁ ଅଠଟି ଅଧ୍ୟାୟରେ ଓଟନ୍‌ଙ୍କ 'ବିଦେଶୀ ରହିଯାଅ' ପୁସ୍ତକର ସାରାଂଶ ଅନୁବାଦ ପାଠକମାନେ ପଢ଼ିବାକୁ ପାଇବେ । ]

## ୧

## —ଅଦ୍ଭୁତ ଅଭ୍ୟୁଦୟ—

ପ୍ରସ୍ତରମୟ ଢାନେ ଜୋରର ଉଟେ ଉଟେ, ଓନାପୁନ୍ ବ୍ଲେଡ୍, ଉଫିଟେଜ୍ ପ୍ରଭୃତି ଗ୍ରାମମାନଙ୍କରେ ଏବଂ କେଣ୍ଟୁକି ଷ୍ଟେଟ୍‌ର ପୂର୍ବ ପର୍ବତମାଳା ଭିତରେ ଥିବା ସେହିପରି ବହୁ ଅଲୋକସ୍ପାନ ଉପତ୍ୟକାରେ (ଯାହା କି ସେ ଅଞ୍ଚଳର ଗ୍ରାମ୍ୟଭାଷାରେ 'ଖୋଲ୍' ବୋଲି କଥିତ ହୋଇଥାଏ) ଏବେ ଯେତେ ଘର ଠିଆ ହୋଇଛି ସେଥିରୁ ଅଧିକାଂଶରେ ଏବେ ଝରକା ଥିବାର ଦେଖାଯାଏ ।

ଘର ସଙ୍ଗେ ଝରକା ରହିବାଟା ଆପଣ ହୁଏତ ଧରି ନେଉଛନ୍ତି । କିନ୍ତୁ ଶତାଧିକ ବର୍ଷଧରି ଏ ଅଞ୍ଚଳର ଲୋକଙ୍କର ସେ ଧାରଣା ନ ଥିଲା । ଅର୍ଟିଷ୍ଣ କାଠଗଡ଼ ଓ ପଟା ଦେଇ ସେଠି ଘରମାନଙ୍କର କାନ୍ଥ ଟେକା ହୋଇ ଆସୁଥିଲା ଏବଂ ସେଠି ବାତାୟନର ଆଗମନ, ଏକ ବସ୍ତୁଯୁଗର ଔଷଧର ଆବିଷ୍କାର ପରି ମନେ କରିବାକୁ ହେବ ।

ଏ ଅଞ୍ଚଳର ସହସ୍ର ସହସ୍ର ଜୀବନ କିପରି ପୁନର୍ଗଠିତ ହୋଇ ଯାଉଛି, ଏହି ବାତାୟନ ହିଁ ତାହାର ପ୍ରତୀକ । ଘରମାନଙ୍କରେ ମାଟିର ଚଟାଣ ଆଉ ନାହିଁ । ତା' ସ୍ଥାନରେ କାଠ-ପଟାର ଆସ୍ତରଣ ଦେଖିବାକୁ ପାଇବେ । ଅନେକ ଘରେ ବିଜୁଳି ଆଲୁଅ ଦେଖା ଦେଇଲଣି । କେଉଁ କେଉଁଠି ଲୁଗାଧୁଆ ମେସିନ ଓ ରେଫ୍ରିଜରେଟର୍ ମଧ୍ୟ । ପ୍ରତି ଗୃହକଣରେ ତିନିଜଣ ଏବେ ଲେଖି ପଢ଼ି ଜାଣିଲେଣି । କେତେକ ସଙ୍ଗତିସମ୍ପନ୍ନ ଲୋକ ଘରକୁ ଟେଲିଫୋନ ମଧ୍ୟ ଆଣିଲେଣି ।

ଏବେ ଏହି 'ଖୋଲ'ମାନଙ୍କରେ ଡାକ୍ତର, ନର୍ସ, ଓକିଲ, ଇଞ୍ଜିନିୟର, ସର୍ବୋପରି ଶିକ୍ଷକମାନେ ସୁପ୍ରାପ୍ୟ ହେଲେଣି । ଏବଂ

ବିଶେଷ ବିସ୍ମୟକର ଘଟଣା ରୂପେ ମନେ ଏସବୁ କୁହାଯାଇଥିଲା ଯେ, ଏ ସମସ୍ତେ ସେହି ନୂତନ ବାହିନୀର ଅନ୍ତର୍ଭୁକ୍ତ ଘରଗୁଡ଼ିକରୁହିଁ ବାହାରିଛନ୍ତି । ସେମାନେ ଏକ ବର୍ଦ୍ଧିଷ୍ଣୁ ବାହିନୀ । କିନ୍ତୁ ଏହି ବାହିନୀର ବୈଶିଷ୍ଟ୍ୟ ଏହି ଯେ ତାହାର ପ୍ରତ୍ୟେକ ଏକ ନିଜ ଜନ୍ମମାଟିର ସେବା କରିବା ପାଇଁ ଆଜୀବନ ପ୍ରତିଜ୍ଞାବଦ୍ଧ ।

ଏହା ପ୍ରାୟ ୧୫୦୦ଟି ନିଃସ୍ୱାର୍ଥ ନେତାଙ୍କର ଏକ ଅପୂର୍ବ ବାହିନୀ !

"

ନଟ୍ ଜିଲ୍ଲାର ବାନେକୋର ନିକଟସ୍ଥ ଗ୍ଲେଟ ଗ୍ରାମ ପିପାପାସ୍‌ରେ ଥଲଶ୍ ଲସ୍ଟର୍‌ଙ୍କର ଅବର୍ଭାବ ପୂର୍ବରୁ ଏହା କିନ୍ତୁ ସମ୍ଭାବନାର ବାହାରେ ଥିଲା । ସେ ୧୯୧୬ ଖ୍ରୀଷ୍ଟାବ୍ଦର ଘଟଣା । ସେତେବେଳେ ଏଠି ଗାଁ କହିଲେ ଯାହା ବୁଝାଏ, ତାହା ବି ନ ଥିଲା । ମିଞ୍ଚିଅ ଦୂର-ଛଡ଼ା ଏଠି ସେଠି ଗୋଟେ ଦୁଇଟା କାଠ-ପଟାର କୁଡ଼ିଆ ଏବଂ କୋଉ ମୁଣ୍ଡରେ କାଠପଟାରେ ତିଆରି ଗୋଟାଏ ଦଦରା ସ୍କୁଲ ଘର । ସେଇ ଥିଲା ଗାଁ । ସେହି ମରମର ଗାଁ ଗୃହଶାଳୀଟି ହିଁ ସେ କାଳର ଜୀବନର ପ୍ରତୀକ ରୂପେ ବୋଧ ହେଉଥିଲା ।

କୋଣ କୋଣ ଧରି କୌଣସି ଲୋକର କୌଣସି କୁଡ଼ିଆରେ ଗୋଟିଏ ହେଲେ ହିଁରକା ନ ଥିଲା । ବାହାରର ଅନେକ ଘର-ଭିତରକୁ ପଶୁଥିଲା ଏକମାତ୍ର ଦୁଆର ବା ପଟାମାନଙ୍କର ଫାଙ୍କ ଦେଇ । ସେତେବେଳେ ଶହେହେକେ ଦୁଇଜଣ ମାତ୍ର ଲେଖିପଢ଼ି ଜାଣୁଥିଲେ । ଜିଲ୍ଲାର ରାଜଧାନୀ ହିଣ୍ଡମାନ ସହିତ ସମଗ୍ର ଜିଲ୍ଲାରେ ଜଣେ ମାତ୍ର କଲେଜ ଗ୍ରାଜୁଏଟ ଥିଲା। ସେ କିନ୍ତୁ ଥିଲା "ଆମେରିକାରୁ ଆଗତ ଜଣେ ବିଦେଶୀ ।"

କେବଳ ନଟ୍‌ଜଙ୍ଗ ନୁହେଁ, ଆଖପାଖ ଗ୍ରୃହପାଞ୍ଚଟି ବ୍ଳକକୁ ମିଶାଇ ଏକ ଲକ୍ଷ ଅଧିବାସୀଙ୍କର ଏଭ ବିସ୍ତୃତ ଅଞ୍ଚଳରେ ଗୋଟିଏ ହେଲେ ହାଇସ୍କୁଲ୍ ନ ଥିଲା କି ହେବାର ସମ୍ଭାବନା ମଧ୍ୟ ନ ଥିଲା । ଏ ଅଞ୍ଚଳର ଯୁବକମାନଙ୍କର ଉଚ୍ଚାଭିଳାଷ ଥିଲା କୋଇଲାଖଣିରେ ମଜଦୁର ହେବା । କୋଇଲାଖଣିର ଶ୍ୱାସରୋଗ ଓ ତା'ର ଭାଇ ଯକ୍ଷ୍ମା ବହୁ ଲୋକଙ୍କୁ ଗ୍ରାସକରୁଥିଲା । ଲୋକେ ଏସବୁକୁ 'ଈଶ୍ୱର-ପ୍ରେରିତ' ଦଣ୍ଡ ବୋଲି ଧରି ନେଇ ନୀରବରେ ସହୁଥିଲେ ଓ ମରୁଥିଲେ ।

ସରକାରୀ ହାକିମମାନେ ତାଚ୍ଛଲ୍ୟରେ କହୁଥିଲେ, "ଇସ୍କୁଲ୍ ବସେଇ ଟଙ୍କା ନଷ୍ଟ କରିବାର କି ଦରକାର ? ଏ ଅଞ୍ଚଳରେ ଦ'ଟା ପିଲା ବାହାରିଲ, ଯେ କି ହାଇସ୍କୁଲକୁ ଯିବାର ଯୋଗ୍ୟ । ପୁଣି, ଶିକ୍ଷକ ଆସିବେ କେଉଁଠୁ ?"

ଅଧିକାଂଶ ସ୍କୁଲ୍ ମେନେଜରମାନେ ଗୋଟିଏ × ଚିହ୍ନ ଦେଇ ହିଁ ନିଜର ଦସ୍ତଖତ ଦେଉଥିଲେ ।

ଯିଏ ବା ଡାକ୍ତର ବୋଲାଉଥିଲେ, ସେ ଜଡ଼ିବୁଟୀର ବୈଦ୍ୟ ଛଡ଼ା ଆଉ କିଛି ନ ଥିଲେ । ସେ ଚିକିତ୍ସାଶାସ୍ତ୍ରରେ କୌଣସି ଶିକ୍ଷା କେଉଁଠି ପାଇ ନ ଥିଲେ । ସେହିପରି ଥିଲେ ଏ ଅଞ୍ଚଳର ଓକିଲ ଓ ଏପରି କି ବିଚାରକ ମଧ୍ୟ । ରାସ୍ତା କହିଲେ ବୁଝାଉଥିଲା ନଈ ବା ଝୋରମାନଙ୍କର ବଙ୍କାଟଙ୍କା ବାଲୁକା ଶଯ୍ୟା, ନଚେତ୍ ଡଙ୍ଗା ପାହାଡ଼ ଉପର ଦେଇ ଅଣଓସାରିଆ ପଦ-ପଥ, ଯାହା ଦେଇ ଚକ-ଯାନ ତ ଦୂରର କଥା, ପାହାଡ଼ିଆ ଖଚର ବି ଯିବା ଅସମ୍ଭବ । ଏବେ ବି ଏ ଅଞ୍ଚଳରେ ଅନେକ 'ଖୋଲ' ଅଛି ଯେଉଁଠି ଗାଁ ଅଛି, କିନ୍ତୁ ଯେଉଁଠାକୁ କୌଣସି ଯାନ ପହଞ୍ଚିପାରିବ ନାହିଁ ।

ସେ କାଳରେ ଏ ଅଞ୍ଚଳର ଲୋକଙ୍କର ସାଧାରଣ ବାର୍ଷିକ ଅୟ ଥିଲା ମାତ୍ର ୨୫ ଡଲାର (ଏକ ଡଲାରରେ ପ୍ରାୟ ପାଞ୍ଚଟଙ୍କା)।

ଲୋକଙ୍କ ମୂର୍ଖତା ଯୋଗୁଁ ପାହାଡ଼ମାନଙ୍କରୁ ପ୍ରତ୍ୟେକଟି ଗଛ କାଟି ପକା ହୋଇଥିଲା; ସବୁ ଜୀବଜନ୍ତୁଙ୍କୁ ନିଶ୍ଚିହ୍ନ କରି ମାରି ଦିଆଯାଇଥିଲା ଏବଂ ରୋଗ ଓ ଦାରିଦ୍ର୍ୟରେ ଲୋକଙ୍କ ବୁଦ୍ଧି ଓ ବିଚାରଶକ୍ତି ହିଁ ବିକୃତ ହୋଇ ପଡ଼ିଥିଲା। ଗରିବ କଳହ ବନ୍ଧୁକରେ ନିଘଣ୍ଟ ଏବଂ ଗୈବ୍ରି ମଦ ବିକି ଓ ପାନ ଥିଲା ସେମାନଙ୍କର ସାଧାରଣ ଜୀବନ।

ଏହି ହତଭାଗ୍ୟ ଅଞ୍ଚଳକୁ ୧୯୧୬ରେ ଅଲିଣ୍ ଲୟୁଡ୍ ଅସି ପହଞ୍ଚିଲେ ବୋଷ୍ଟନ ସହରରୁ।

ସ୍ଥାନୀୟ ଏକ ସ୍ତ୍ରୀ ଲୋକ ତାଙ୍କୁ ଦେଖି ପଚାରିଥିଲା, "ବିଦେଶୀ, ତମେ ଏଠିକି କାହିଁକି ଅସିଛ ?" ସେ ସ୍ତ୍ରୀ ଲୋକର ଗୋଡ଼ରେ ଜୋତା ନ ଥିଲା, ସେ କାଖରେ ଧରିଥିଲା ତାର ଏଗାରଟି ସନ୍ତାନ-ମାଳାର ଶେଷଟିକୁ ଏବଂ ବୟସ ତିରିଶ ହେଲେହେଁ ସେ ସମ୍ପୂର୍ଣ୍ଣ ବୁଢ଼ୀ ହୋଇଯାଇଥିଲା।

ଅଲିଣ୍ ଲୟୁଡ୍ ଗୋଟିଏ ଉଜ୍ଜଳ ଅଡ଼କୁ ଚାହିଁଲା ପରି ତା' ଅଡ଼କୁ ଅନାଇଲେ। ତାଙ୍କର ବୟସ ମଧ୍ୟ ସେତେବେଳକୁ ତିରିଶ। ସେ ମଧ୍ୟ ରୁଗ୍ଣ ଓ ଦୁର୍ବିପାକ-ପରିହତ। ପିଲାଦିନେ ମେରୁଦଣ୍ଡର ମେନିଞ୍ଜାଇଟିସ୍ ରୋଗ ଭୋଗ ଯୋଗୁ ତାଙ୍କର ଡାହାଣ ଅଂଶଟା ଏକ ପ୍ରକାର ପକ୍ଷାଘାତଗ୍ରସ୍ତ ବୋଲି ଚଳେ। ପରିବାରର ଯାହା କିଛି ସମ୍ପତ୍ତି ଅବଶେଷ ଥିଲା, ତାହା ସେ ଗୋଟିଏ ଘୋଡ଼ାଗାଡ଼ିରେ ପୁରେଇ ସୁଦୂର ବୋଷ୍ଟନ ସହରରୁ ପଳାଇ ଆସିଛନ୍ତି। ଅଜ

ତାଙ୍କର ଯାହା ଜିନିଷପତ୍ର, ସେସବୁ ପଛରେ ବନ୍ଧା ଯାଇଥିବା ସାମାନ୍ୟ ଗୋଟିଏ ଟ୍ରଙ୍କରେ ହିଁ ଥିଲା ।

ଅଲଣ ଲସୁଭ୍ ସେ ସ୍ତ୍ରୀ ଲୋକଟିକୁ ଉତ୍ତରଦେଲେ, "ଦୁଃଖ ସଙ୍ଗ ଖୋଜେ ପରା !"

ସେ ସ୍ତ୍ରୀ ଲୋକଟି ଏହା ଶୁଣି କହିଲା, "ରହିଯାଅ ବିଦେଶୀ। ଏଠି ତମର ସାଙ୍ଗର ଅଭାବ ହେବନି ନାହିଁ ।"

ଅଲଣ୍ ଲସୁଭ୍ ରହିଗଲେ । ଏବେ ତାଙ୍କର ବୟସ ୭୭ । ତାଙ୍କର ବ୍ୟକ୍ତିଗତ ସମ୍ପତ୍ତି ଏବେ ଅଳ୍ପରୁ ଅଳ୍ପତର ହୋଇ ହୋଇ କେତୋଟି ଭୁଲାର ବସ୍ତ୍ର ଓ ଏକ ପୁରାତନ ଟାଇପ୍‌ରାଇଟରରେ ପର୍ଯ୍ୟବସିତ । କେବଳ ଖାଇବା ପିନ୍ଧିବା ଛଡ଼ା ତାଙ୍କର ଦରମା ବୋଲି କିଛି ନାହିଁ ଏବଂ ସେତକ ପାଇଁ ସେ ସକାଳୁ ଅଧରାତ ଯାଏଁ ଖାଟୁଥାନ୍ତି । ତାଙ୍କର ଡାହାଣ ହାତ ପକ୍ଷାଘାତଗ୍ରସ୍ତ ହୋଇ ପଡ଼ିଥିବା ଯୋଗୁଁ ସେ ବାଁ ହାତର ଅଙ୍ଗୁଠିରେ ଟାଇପ୍‌ରାଇଟର୍ ଚଳାନ୍ତି । ୧୯୧୭ରୁ ଏପର୍ଯ୍ୟନ୍ତ ସେଇ ଟାଇପ୍‌ରାଇଟର୍ ଦଶ ଲକ୍ଷ ଟଙ୍କା ଗୁହାରି କରିଛି, ପୁଣି ତାଠାରୁ ଅଧିକ ଅଧିକ ମୂଲ୍ୟର ଲୁଗା, ଖାଦ୍ୟ, କାଠ, ପଥର ପ୍ରଭୃତି ଅନ୍ୟାନ୍ୟ ସାମଗ୍ରୀ ମଧ୍ୟ ସଂଗ୍ରହ କରିଛି । ସବୁ କେବଳ ଅନ୍ୟମାନଙ୍କ ଉପକାର ପାଇଁ ।

ସେଇ ଟାଇପ୍‌ରାଇଟର୍ ହିଁ ଏଇ ଅଞ୍ଚଳର ଦୁଇ ଶତ ବାଳକବାଳିକାଙ୍କୁ ବିଶ୍ୱବିଦ୍ୟାଳୟକୁ ପଠାଇଛି ଓ ତାଙ୍କର ସମସ୍ତ ଖର୍ଚ୍ଚ ବହନ କରିଛି । ୧୨୦୦ ଶିକ୍ଷକ, ହେଡ଼ମାଷ୍ଟର ଓ ଜିଲ୍ଲା ଇନ୍‌ସପେକ୍‌ଟରଙ୍କୁ ମଧ୍ୟ ଏଇ ଟାଇପ୍‌ରାଇଟର୍ ତିଆର କରି ଠିଆ କରେଇଛି । ପୁଣି ନିଜର ପଇସାପତ୍ର ଯୋଗାଡ଼ କରି ପାରିବେ ସେମାନଙ୍କୁ କଲେଜ ଶିକ୍ଷା ପାଇଁ ପ୍ରେରଣା ଦେଇଆସିଛି । ଏଇ

ପାହାଡ଼ିଆ ଅଞ୍ଚଳର ଗୋଟିଏ ଯୁବକଙ୍କୁ ତାହା ଗଢ଼ିପାରୁଛି ଯୁକ୍ତରାଷ୍ଟ୍ରର କଂଗ୍ରେସରେ ଯାଇ ବସିବା ପାଇଁ ଏବଂ କେଣ୍ଟୁକି ଷ୍ଟେଟ୍‌ର ପ୍ରାଦେଶିକ ସଭା ଓ ସରକାରୀ ଅଫିସମାନଙ୍କ ପାଇଁ ମଧ୍ୟ ଉପଯୁକ୍ତ ଲୋକ ଯୋଗାଇ ପାରୁଛି ।

ଯେଉଁ ଲୋକେ ଉଚ୍ଚାକାଂକ୍ଷା କଣ ଜାଣି ନ ଥିଲେ ଓ ଉନ୍ନତତର ଜୀବନ ଗୃହୁଁ ନ ଥିଲେ, ତାଙ୍କ ଭିତରେ ଏକ ସୁଦୂରପ୍ରସାରୀ ଦୂରଦୃଷ୍ଟିସମ୍ପନ୍ନ ଯୋଜନା ଠିଆ କରି ଦିଆଯାଇଛି । ଅଲିଶ୍ ଲୟୃଡ୍ ଅସିଲଟବଲେ ଯେଉଁଠାରେ ଗୋଟିଏ ହେଲେ ହାଇସ୍କୁଲ ନ ଥିଲା ସେଠି ବର୍ତ୍ତମାନ ୧୪ଟି ଉତ୍ତମ ହାଇସ୍କୁଲ ସୁପରିଚାଳିତ ହେଉଛି ।

କାନେ କୋର ମୁଣ୍ଡରେ ଗୋଟିଏ ମୁମୂର୍ଷୁ ଗୃହଶାଳୀ ଥିଲା । ବର୍ଣ୍ଣପରିଚୟ ହିଁ ଥିଲା ସେଠି ଜ୍ଞାନର ଶେଷସୀମା । ସେଇ ସ୍ଥାନରେ ଅଲିଶ୍‌ଙ୍କ ଜୀର୍ଣ୍ଣ ଟାଇପ୍‌ରାଇଟର୍‌ଟି ଗୋଟିଏ କଲେଜ ଠିଆ କରେଇଛି । ଯାହା ଦିନେ ଅସମ୍ଭବ ବୋଲି ମନେ ହେଉଥିଲା, ତାହା ଆଜି ବାସ୍ତବ ଓ ପ୍ରତ୍ୟକ୍ଷ ।

---

## ୨

## — ଆଦ୍ୟାରମ୍ଭ —

ଆମେରିକାର ଚେଲସିଆର ସହରରେ ଲ୍ୟୋ'ଦୁ'ପଁ ନାମକ ଜଣେ ଧନୀ ବ୍ୟବସାୟୀଙ୍କର କେତେବର୍ଷ ତଳେ ମୃତ୍ୟୁ ହେଲା। ମୃତ୍ୟୁ ପରେ ତାଙ୍କର ବ୍ୟକ୍ତିଗତ କାଗଜପତ୍ର ଦେଖୁ ଦେଖୁ ଗୋଟିଏ କୌତୁହଳୋଦ୍ଦୀପକ ବ୍ୟାପାର ଧରାପଡ଼ିଲା ଯେ କେଣ୍ଟୁକୀ ଷ୍ଟେଟ୍‌ର ଘନ ପାହାଡ଼ିଆ ଅଞ୍ଚଳରେ ଥିବା ଗୋଟିଏ କ୍ଷୁଦ୍ର, ଅଜ୍ଞାତ ଗାଁକୁ ସେ ବରାବର ମୋଟେ ଅର୍ଥିକ ସାହାଯ୍ୟ ପଠାଇ ଆସୁଥିଲେ। ଗାଁଟିର ନାମ ପିପାପାସ୍। ସାହାଯ୍ୟ ପାଇବା ଅନୁଷ୍ଠାନର ନାମ ଜାନେ-ଗୋଷ୍ଠୀ-ଯୋଜନା-କେନ୍ଦ୍ର। ଲୋକେ ଏହା ଦେଖି ଆଶ୍ଚର୍ଯ୍ୟ ହେଲେ। କେଉଁଠି ସେହି କ୍ଷୁଦ୍ର ଅଜ୍ଞାତ ଗ୍ରାମ ? ସେଠି କ'ଣ ଘଟୁଛି, ଯାହା ଏହି ଧନପତିର ମୁଦ୍ରାମୁଣାର ମୁହଁ ଖୋଲି ଦେଇଥିଲା ? ମୁଁ ('ବିଦେଶୀ ରହୁଯାଅ'ର ଲେଖକ)ସେହି ପ୍ରଶ୍ନର ଉତ୍ତର ପାଇବା ପାଇଁ ହିଁ ପିପାପାସ୍ ଓ ଜାନେ ଜୋଇର ଗୋଷ୍ଠୀ ଯୋଜନା କେନ୍ଦ୍ର ଦେଖିବାକୁ ଯାଇଥିଲି। ସେଠି ଦେଖିଲି ଯେ ଜଣେ ମାତ୍ର ସ୍ତ୍ରୀଲୋକ ଗତ ୩୦ ବର୍ଷ ଭିତରେ ଯାହା କରିପାରିଛନ୍ତି, ସେପ୍ରକାର ସେବା ଓ ତ୍ୟାଗ ଏ ଯୁଗରେ ଆଶା କରାଯାଏ ନାହିଁ। କିନ୍ତୁ ତାହା ବାସ୍ତବରେ ଘଟିଛି।

ଅଲିସ୍ ଲଏଡ୍ ବୋଷ୍ଟନ୍ ସହରରେ ଏକ ଧନୀ ସୌଦାଗରର କନ୍ୟା ଥିଲେ। କିନ୍ତୁ ବାପା ମରିଯିବା ପରେ ଦେଖାଗଲା ଯେ ସେ ବେଶି କିଛି ଟଙ୍କା ଛାଡ଼ି ଯାଇ ନାହାନ୍ତି; ଫଳରେ ମା ଓ ନିଜକୁ ପୋଷିବା ପାଇଁ ସେ ଖବରକାଗଜରେ ଗୃକସ୍ଥି କଲେ। ପରେ ବିବାହ କଲେ ମଧ୍ୟ। କିନ୍ତୁ ମେରୁଦଣ୍ଡରେ ଏକ ଦୁରାରୋଗ୍ୟ ରୋଗ ଧରିବାରୁ ସେ ଏକ ପ୍ରକାର ଅଚଳ ଅବସ୍ଥାକୁ ଆସିଲେ।

ପରସ୍ପର ବୁଝାମଣାରେ ସ୍ୱାମୀଠାରୁ ବିଚ୍ଛିନ୍ନ ହୋଇ ସେ ଏପରି ଏକ ଜାଗାକୁ ଯିବାକୁ ଚାହିଁଲେ, ଯେଉଁଠି ସ୍ୱାସ୍ଥ୍ୟ ଭଲ ରହିବ ଏବଂ ପ୍ରାୟ ବିନା ପଇସାରେ ଚଳିହେବ । କେତେକ ପାଦ୍ରୀ ବନ୍ଧୁ କେଣ୍ଟୁକୀର ଏହି ପାହାଡ଼ିଆ ଅଞ୍ଚଳ ତାଙ୍କ ପାଇଁ ଠିକ୍ କଲେ । ସେଠି କେତେକ ପାଦ୍ରୀ ଗୋଟିଏ ଘର କରିଥିଲେ । ସେଠାର ଅସଭ୍ୟ ଲୋକଙ୍କୁ ଭଲ ବାଟକୁ ଆଣିବାରେ ସମ୍ପୂର୍ଣ୍ଣ ବିଫଳ ହୋଇ ସେମାନେ ସେଇ ଘରଟି ଛାଡ଼ିଦେଇ ପଳାଇ ଆସିଥିଲେ । ପାଦ୍ରୀ ବନ୍ଧୁମାନେ କହିଲେ, ଅଲିସ୍ ଲୟଡ୍ ସେ ଘରଟି ମାଗଣା ପାଇପାରନ୍ତି । ମିସେସ୍ ଲୟଡ୍ ନିଜ ମା'ଙ୍କୁ ସାଥିରେ ଧରି, ନିଜର ସମସ୍ତ ଗୃହସ୍ଥାଳି ଗୋଟିଏ ଘୋଡ଼ାଗାଡ଼ିରେ ଲଦି ଦିନେ କେଣ୍ଟୁକୀର ପାହାଡ଼ିଆ ଅଞ୍ଚଳକୁ ଚାଲିଲେ ଏବଂ ପିପାପାସ୍‌ର ଅନତିଦୂରରେ ଟ୍ରବୁଲ୍‌ସମ୍ କ୍ରୀକ ନାମକ ପଲ୍ଲୀରେ ଥିବା ସେହି ମିସ୍‌ନାରୀନିର୍ମିତ ଦଦରା କୁଡ଼ିଆଟିରେ ଜୀବନ କଟେଇବା ପାଇଁ ଜିନିଷପତ୍ର ଓହ୍ଲାଇଲେ । ସଭ୍ୟ ଆନନ୍ଦମୟ ବିଳାସୋଚ୍ଛ୍ୱଳ ବୋଷ୍ଟନ ସହରବାସିନୀ ଏହି ଶିକ୍ଷିତା, ଧନୀ-କନ୍ୟା ଏଇ ନିର୍ଜନ, ଅସଭ୍ୟ, ଆଲୋକହୀନ ପାହାଡ଼ିଆ ଅଞ୍ଚଳରେ କିପରି ଜୀବନ କଟେଇବେ ? ଏଣେ ପୁଣି ରୋଗ ଓ ଦାରିଦ୍ର୍ୟ, ଏଇସବୁ ଚିନ୍ତାରେ ସେ ଉଦ୍‌ବିଗ୍ନ ହୋଇ ରହୁଥାନ୍ତି ।

ଦିନେ ଗୋଟିଏ ପାହାଡ଼ୀ ବାଳକ ତାଙ୍କୁ ଦେଖିବାକୁ ଆସିଲା । ଯଦିଓ ବୋଷ୍ଟନ ସହରର ମାପକାଠିରେ ମିସେସ୍ ଲୟଡ୍‌ଙ୍କର ଲୁଗାପଟା, ଘୋଡ଼ା ଓ ଘୋଡ଼ାଗାଡ଼ି ସବୁ ଥିଲା ଦରିଦ୍ର ଓ ନିମ୍ନ ଶ୍ରେଣୀର, ପାହାଡ଼ୀ ବାଳକର ଚକ୍ଷୁ ସେସବୁ ଦେଖି ବିସ୍ମୟରେ ବିସ୍ଫାରିତ ହୋଇଉଠିଲା । ସେ ଅଲିସ୍ ଲୟଡ୍‌ଙ୍କର ଛିଣ୍ଡା

ପୁରୁଣା କୋଠରିକୁ ହାତରେ ପରୀକ୍ଷା କରି ଦେଖୁ ଦେଖୁ ବିସ୍ମିତ ସ୍ୱରରେ ତାଙ୍କୁ ପଚାରିଲି, "ତୁମେ ଜଣେ ରାଜକନ୍ୟା, ନା ?"

ପାହାଡ଼ୀ କନ୍ୟାର ଏଇ କଥା ପଦକରେ ମିସେସ୍ ଲସୃଡ଼ଙ୍କର ଜୀବନ ଅନ୍ୟ ଆକାର ଧାରଣ କଲା । ତାଙ୍କ ଘରେ ଏକ ଝରକା ଖୋଲିଗଲା, ଯାହା ଦେଇ ସେ ପ୍ରକୃତ ଜୀବନକୁ ଦେଖିବାକୁ ପାଇଲେ । ତାଙ୍କର ଅସ୍ପକୋର୍ଡ୍ର ସକଳ ଦୁଶ୍ଚିନ୍ତା ହଠାତ୍ ମନରୁ ଖସିପଡ଼ିଲା । ବାସ୍ତବରେ କହନ୍ତି—"ମୋର ସାମାନ୍ୟ ବି ଏମାନଙ୍କ ନିକଟରେ ଦୁର୍ଲ୍ଲଭ । ମୁଁ ଲଜ୍ଜିତ ହେଲି ଯେ ମୋ ନିଜ ଦୁଃଖକୁ ମୁଁ ଏତେ ବଡ଼ କରି ଦେଖୁଥିଲି । ମୁଁ ସେଇ ମୁହୂର୍ତ୍ତରେ ମୋର ସମସ୍ତ ଅତୀତକୁ କବର ଦେଲି ଓ ମୋର ଦୁଃଖସବୁ ଭୁଲିଗଲି । ମୁଁ ମୋର ସ୍ରଷ୍ଟାଙ୍କ ସମ୍ମୁଖରେ ପ୍ରଥମ ଥର ପାଇଁ ବିନୟ ଅନୁଭବ କଲି । ଭାବିଲି, ସେ ମତେ ଯେଉଁ ସମ୍ପଦରେ ବର୍ତ୍ତମାନ ଅଂଶୀଦାର କରିଛନ୍ତି, ତାହାର ମୂଲ୍ୟ କରିହେବ ନାହିଁ ।"

ସେ ସେଇଦିନଠାରୁ ସେହି ପାହାଡ଼ିଆ ଅଞ୍ଚଳର ଜନସ୍ୱାର୍ଥ ପାଇଁ ନିଜର ଜୀବନକୁ ନ୍ୟାସ କରିଦେଲେ । ସେ ବୁଝିଲେ ଯେ ପାଦ୍ରୀମାନେ ସେଠି ଅକୃତକାର୍ଯ୍ୟ ହୋଇ ଫେରିଯାଇଛନ୍ତି କାରଣ ସେମାନେ ନିଜକୁ ସ୍ଥାନୀୟ ଲୋକଙ୍କ ସଙ୍ଗେ ମିଶାଇପାରିଲେ ନାହିଁ । ସେମାନେ 'ବିଦେଶୀ' ହୋଇ ହିଁ ରହିଲେ ଏବଂ ତେଣୁ ଏ ଅଞ୍ଚଳର ବାତାୟନହୀନ ଗୃହଗୁଡ଼ିକର ଦ୍ୱାର ସେମାନଙ୍କର ଅଭ୍ୟର୍ଥନା ଲାଗି ମେଲା ହେଲା ନାହିଁ ।

କିଛି କିଛି ଦିନ ଭିତରେ ପାହାଡ଼ୀ ଲୋକେ ବୁଝିନେଲେ ଯେ ବର୍ତ୍ତମାନ ଯେଉଁ ଦୁଇଟି ବିଦେଶୀ ସ୍ତ୍ରୀ ଅସିଛନ୍ତି, ସେମାନେ ପ୍ରକୃତରେ ଭଲ ଲୋକ । ନିଜ ପାଇଁ କିଛି ନ ଚାହିଁ, ଲୋକଙ୍କଠାରୁ

କାହିଁ ହେଲେ ଅଶା ନ କରି ସେମାନେ ଏଠା ଲୋକଙ୍କର ମଙ୍ଗଳ କରିବାକୁ ଚାହାନ୍ତି ।

ଏହି ଭାବ କ୍ରମେ ଲୋକଙ୍କ ଭିତରେ ବ୍ୟାପିଲା ଏବଂ ଲୋକଙ୍କ ହୃଦୟ ଜିଣିନେଲା ପରେ ଯାହା ହୁଏ, ସେଇପରି ବିସ୍ମୟକର ବ୍ୟାପାର କ୍ରମେ ଘଟିବାକୁ ଆରମ୍ଭ କଲା ।

ପିଆପାସ୍ ଗାଁର କିଛି ତଳେ ଝାରେନ ଝୋର । ସେଠି ବର୍ଣ୍ଣ ଜର୍ନସନ୍ ନାମକ ଚଷାର ଘର । ଘର କହିଲେ ଗୋଟିଏ ବଖରା ଓ ଘେରା ହୋଇଥିବା ବାରଣ୍ଡାଟି ମାତ୍ର । ତାର ଚଟାଣ ମାଟି, କାନ୍ଥ ମାଟି । ସେଇ ବଖରାଟିରେ ଥାନ୍ତି ବର୍ଣ୍ଣ ଓ ତାର ସ୍ତ୍ରୀ ଏବଂ ତାଙ୍କର ନଅଟି ପିଲା । ପିଲା ଜନ୍ମ କରି କରି ବର୍ଣ୍ଣର ସ୍ତ୍ରୀ ହାଡ଼-ଚମରେ ପରିଣତ ହୋଇଛି । ତାଙ୍କ ଘରର ଏକମାତ୍ର ବାସନ ହେଉଛି ଗୋଟିଏ ଲୁହାର କେଟ୍ଲି, ଯେଉଁଥିରେ ଖାଦ୍ୟ ସିଝ ହୁଏ ପୁଣି ଲୁଗାପଟା ଧୋଇବା ପାଇଁ ସିଝା ହୁଏ ।

ଶୀତ ଦିନ । ଚାରିଆଡ଼େ ବରଫ ପଡ଼ୁଛି । ଚଷା ବର୍ଣ୍ଣ ଜନସନ୍ ଥରି ଥରି ଏକ ସନ୍ଧ୍ୟାରେ ମିସେସ୍ ଲସ୍ଗୁଡ଼୍‌ଙ୍କ କୁଡ଼ିଆକୁ ଆସି ତାଙ୍କ ଆଗରେ ଅଣ୍ଟୁମାଡ଼ି ବସିପଡ଼ିଲା ଓ କହିଲା, "ମୁଁ ଶୁଣିଲି, ଏଠାରେ ବିଦେଶୀ ମହିଳାମାନେ କିଛି ନ ନେଇ ପାହାଡ଼ୀ ଅଞ୍ଚଳର ଦୁଃଖ ଦୂର କରିବାକୁ ଚାହାନ୍ତି । ଆମେ ତ ଘୁଷୁରି ପରି ଜୀବନ କାଟିଲୁ, ଯଦି ଆମ ପିଲାଗୁଡ଼ିକୁ ସେମାନେ ମଣିଷ କରିଦିଅନ୍ତେ, ତେବେ ମୋର ତ ଆଉ କିଛି ଦେବାର ନାହିଁ, ମୁଁ ତାଙ୍କୁ ପଚିଶ ଏକର ଜମି ଦିଅନ୍ତି, ଆଉ ରହିବା ପାଇଁ ଗୋଟିଏ କୁଡ଼ିଆ ବନେଇ ଦିଅନ୍ତି ।"

ମିସେସ୍ ଲୟୁଡ଼୍ ଚେଷ୍ଟା ବର୍ଷର ଏହି ଦାନରେ ଅଭିଭୂତ ହୋଇପଡ଼ିଲେ ଏବଂ ଯଥା ସମୟରେ ବର୍ଷର ନିଜ ହାତରେ ଗଢ଼ା ତାଙ୍କ ଡୋରର କୁଡ଼ିଆକୁ ଘୁଞ୍ଚିଗଲେ । ସେଇ କୁଡ଼ିଆଟି ଗୋଟିଏ ପାହାଡ଼ର କଟି ଦେଶରେ । ସେଇ କୁଡ଼ିଆରେ ମିସେସ୍ ଲୟୁଡ଼୍ ଗତ ୪୦ ବର୍ଷ ଧରି ଏକୋଦିକମେ ରହି ଆସିଛନ୍ତି । ସେଠୁ ଆଉ କୌଣସି ଅନ୍ୟ ଯାଇ ନାହାନ୍ତି । ତାଙ୍କ କୁଡ଼ିଆଟିର ନାମ 'ଈଗଲ୍-ବସା' ।

ଚେଷ୍ଟା ଷଣ୍ ଇଳସନ୍ ମିସେସ୍ ଲୟୁଡ଼୍ ଓ ତାଙ୍କ ମା ପାଇଁ ଯେଉଁ କୁଡ଼ିଆ କରିଥିଲ, ସେଥିରେ ଅଦୌ ଝରକା ନଥିଲ । ଏମାନେ ସେଠାକୁ ଯିବାମାତ୍ରେ ଝରକା ଖୋଲିବା ଆରମ୍ଭ କଲେ । ତାକୁ ଦେଖୁଥିବା ଶ୍ରମିକମାନେ ଆଶ୍ଚର୍ଯ୍ୟ ହୋଇ କହିଲେ "ଝରକା କ'ଣ ହେବ ? ଝରକା ମାନେ ତ ବିପଦ ! ଘରେ ଲୋକ ନିଶ୍ଚିନ୍ତରେ ବସି କାମ କରୁଥିବ ତ ଏଣେ ଖୋଲା ଝରକା ଦେଇ ରାଇଫଲର ଗୁଳି ଯାଇ ସିଧା ତା ମୁଣ୍ଡରେ ପଶିବ ?"

ଝରକା କିନ୍ତୁ ଖୋଲା ହେଲା ଏବଂ ରାଇଫଲ୍‌ର ଗୁଳି ମଧ୍ୟ ଆସିଲା । ଦିନେ ରାତିରେ ମିସେସ୍ ଲୟୁଡ଼୍ ଦୀପ ଆଲୁଅରେ ବସି ଟାଇପ୍ କରୁଥିଲେ । ସମସ୍ତ ଝରକା ଖୋଲିକରି ପ୍ରଚଣ୍ଡ ଧ୍ୱନିତ କରି ରାଇଫଲ୍ ଫୁଟିଉଠିଲା ଏବଂ ତାଙ୍କ ମୁଣ୍ଡଉପରେ ଏକ ଝରକାର କାଚ ଭାଙ୍ଗି ଚୂନାଚୂନା ହୋଇଗଲା । କେତେ ଖଣ୍ଡ ଭଙ୍ଗାକାଚ ମିସେସ୍ ଲୟୁଡ଼ଙ୍କ କୋଳରେ ଆସି ପଡ଼ିଲା । ସେ ସେସବୁକୁ ଝାଡ଼ି ଦେଇ କାମ କରିବାକୁ ଲଗିଲେ । ଆଉ ଏକ ଗୁଳି ଆସି ବିପରୀତ କାନ୍ଥରେ ଗେଞ୍ଜି ହୋଇଗଲା । ଆଉ ଏକ ଝରକା ଭାଙ୍ଗିଲା । ମିସେସ୍ ଲୟୁଡ଼୍ ଅନୁଦ୍‌ବିଗ୍ନ ଭାବରେ କାମ କରି ଚାଲିଲେ । ଆଉ ରାଇଫଲ୍ ଶବ୍ଦ ଶୁଣାଗଲା ନାହିଁ ।

ତହିଁ ଆରଦିନ ସକାଳେ ଜଣେ ପାହାଡ଼ୀ ଲୋକ ଅଯାଚିତ ଭାବରେ ଆସି ଭଙ୍ଗା ଝରକାରେ କାଚ ଲଗାଇ ଦେଇଗଲେ ଏବଂ ଶେଷରେ କ୍ଷମା ଭିକ୍ଷାର ସୂଚନା ଦେଇ କହିଲେ, "ସେ ଲୋକେ ଆପଣଙ୍କୁ ଆଉ ବିରକ୍ତ କରିବେ ନାହିଁ। ମୁଁ ଏଇ ନିକଟରେ ଥାଏ। ଦରକାର ହେଲେ ମତେ ଡକାଇବେ। ମୋର ନାମ ସ୍ଲୋନ୍।"

କମୋଡ଼ର ସ୍ଲୋନ୍ ପ୍ରକୃତରେ କାନେ କୋରର ତତ୍କାଳୀନ ନାମମାତ୍ର ଗୃହଶାଳାର ଅଧିଧାନ। ତା ସଙ୍ଗେ ପରିଚୟ ହେବାରୁ ମିସେସ୍ ଲୟୁଡ୍ ତା ଜରିଅରେ ଗୃହଶାଳୀ ଘରେ ସେଠା ଲୋକଙ୍କର ଏକ ସଭାର ଆୟୋଜନ କଲେ। ସ୍ଲୋନ୍‌ର ପ୍ରତିପତ୍ତି ଓ ମିସେସ୍ ଲୟୁଡ୍‌ଙ୍କ ସୁନାମ ଯୋଗୁଁ ଏତେ ଲୋକ ସଭାକୁ ଆସିଲେ ଯେ କାନେ କୋରର କାଠ-ପଟା ତିଆରି ଛୋଟ ଗୃହଶାଳୀ ଘର ଟଳମଳ ହେବାକୁ ଲାଗିଲା।

ମିସେସ୍ ଲୟୁଡ୍ ସେମାନଙ୍କୁ କହିଲେ, "ମୋର ମନେ ହେଉଛି ଏଠାରେ ଗୋଟିଏ ନୂଆ ସ୍କୁଲ ହେଲେ ଭଲ ହୁଅନ୍ତା।"

ଲୋକେ ହୋ ହୋ କରି ହସି ଉଠିଲେ। ମିସେସ୍ ଲୟୁଡ୍ ଦୃଢ଼ ଭାବରେ କହିଲେ, "ଏଠି ସ୍କୁଲ ହେବ।"

ଜଣେ ଲୋକ ପଚାରିଲା, "ଟଙ୍କା କିଏ ଦେବ?" ମିସେସ୍ ଲୟୁଡ୍ କହିଲେ, "ମୁଁ ଟଙ୍କାର ଯୋଗାଡ଼ କରିଦେବି। କିନ୍ତୁ ସ୍କୁଲ ତିଆରିରେ ମୁଁ ତମ ପ୍ରତ୍ୟେକଙ୍କର ସାହାଯ୍ୟ ଲୋଡ଼ିବି ଏବଂ ତମର ସଦ୍‌ଭାବ ଓ ସହଯୋଗ ମୋର ବେଶି ଲୋଡ଼ା।" ତା ସଙ୍ଗେ ସଙ୍ଗେ ସେ ତିନୋଟି ପ୍ରତିଜ୍ଞା ସେମାନଙ୍କ ଆଗରେ କଲେ—ସେ ସେମାନଙ୍କ ଧର୍ମ ନେଇ କିଛି କହିବେ ନାହିଁ; ସେମାନଙ୍କ ସ୍ଥାନୀୟ

ରାଜନୀତରେ ପଶିବେ ନାହିଁ; ତାଙ୍କ ମଦ୍ୟପାନରେ ହସ୍ତକ୍ଷେପ କରିବେ ନାହିଁ ।

ସଭାରେ ଜଣେ କହୁଥିଲା, "ତା' ହେଲେ ତମର ଆମର ଭେଦ୍ ରହିବ ।" ଅଲଗ୍ ଲଫ୍ଗ୍ ତାଙ୍କର ପ୍ରତିଜ୍ଞା ଅକ୍ଷରେ ଅକ୍ଷରେ ପାଳନ କରି ଆସିଛନ୍ତି । ଏପର୍ଯ୍ୟନ୍ତ ତାଙ୍କର ଧର୍ମ କ'ଣ ବା ତାଙ୍କ ରାଜନୀତ କ'ଣ, କେହି କହିପାରିବେ ନାହିଁ । ମାନବ ସେବା ହିଁ ତାଙ୍କର ଏକମାତ୍ର ଧର୍ମ ଓ ରାଜନୀତ ଏବଂ ପାହାଡ଼ୀ ଲୋକଙ୍କୁ ମଦ୍ୟପାନ ନ କରିବାକୁ ତାଙ୍କୁ ବକ୍ତୃତା ଦେବାକୁ ପଡ଼ି ନାହିଁ । କାଳେ ସ୍କୁଲ ଓ କାଳେ କଲେଜର ଶିକ୍ଷା ଫଳରେ ସେ ଅଞ୍ଚଳରେ କଥାକଥାକେ ବନ୍ଧୁକରେ ମଗ୍ରମର ଓ ମଦ୍ୟପାନର କୁଅଭ୍ୟାସ ସମାଜ-ମନରୁ ଆପେ ଆପେ ଖସିପଡ଼ୁଛି ।

ମିସେସ୍ ଲଫ୍ଗ୍ କ୍ କ ପ୍ରକାର ସ୍କୁଲ ସେଠାରେ ବସାଇବାକୁ ଗଲେ ? କ'ଣ ଥିଲା ତାଙ୍କର ଲକ୍ଷ୍ୟ ?

ସେ ଏପରି ସ୍କୁଲ ଗଢ଼ିବାକୁ ସ୍ଥିର କଲେ, ଯାହା ସେହି ଅସଭ୍ୟ ପାହାଡ଼ୀ ଅଞ୍ଚଳର ମୁଖ ପରିବର୍ତ୍ତନ କରିଦେବ, ତାକୁ ଅଳ୍ପକାଳ ଭିତରେ ଦେବ ନୂତନ ଜନ୍ମ । ସେ ସ୍କୁଲ ଏପରି ଶିକ୍ଷା ଦେବ, ଯେପରି କ ସେ ଅଞ୍ଚଳର ବୁଦ୍ଧିମାନ ଓ ଶକ୍ତିମାନ ବାଳକ-ବାଳିକା ଲୋକଲୋଚନକୁ ବାହାରି ଆସିବେ । ପୁଣି ସେଇ ବୁଦ୍ଧିମାନ କେତୋଟିଙ୍କୁ ଏପରି ଭାବରେ ତାଲିମ ଦିଆଯିବ, ଯେପରି କ ଭବିଷ୍ୟତରେ ସେମାନେ ନିଃସ୍ୱାର୍ଥ ଜନସେବକ ଓ ଜନସେବିକା ଭାବରେ, ଲୋକନାୟକ ଓ ଲୋକନାୟିକା ଭାବରେ ନିଜ ମାଟିକୁ ଫେରି ଆସିବେ, ନିଜର ଅଧଃପତିତ ସମାଜକୁ ନିଜ ଚେଷ୍ଟାରେ ଉଠାଇବାକୁ ।

ନେତା ? ନାୟକ ? ପଥପ୍ରଦର୍ଶକ ? ଏଇ ଅସଭ୍ୟ, ଅନ୍ଧକାର, ଅନୁର୍ବର, ଅଗମ୍ୟ ପାହାଡ଼ମାଳା ଭିତରେ ? କି କଥା କହୁଛ ?

ମିସେସ୍ ଲୟୁଡ୍ କହିଲେ, "ହଁ, ସେଇମାନେ ଏଇଠି ଅଛନ୍ତି । ଡାକ୍ତର, ଇଂଜିନିୟର, ପ୍ରିନ୍‌ସିପାଲ୍, ପାଦ୍ରୀ, ଉଇସରକାରୀ କର୍ମଚାରୀ । ସେମାନେ ସମସ୍ତେ ଏଇଠି ଅଛନ୍ତି । ଏହି ମାଟିରୁ ତାଙ୍କୁ ଉଦ୍ଧାର କରିବାକୁ ହେବ ।"

•

ରୋଗ, ନିରକ୍ଷରତା, ଅନ୍ତର୍ବାଦ ଫଳରେ ପୁରୁଷପୁରୁଷ ଧରି ଏଇ ପାହାଡ଼ୀ ଅଞ୍ଚଳର ଜନତା କ୍ରମେକ୍ରମେ ଏପରି ଅଧଃପତିତ ହୋଇ ଆସିଥିଲେ ଯେ, ଅନେକ ଯୋଗ୍ୟ ଲୋକଙ୍କର ଦୃଢ଼ ଧାରଣା ହୋଇ ଯାଇଥିଲା ଯେ ସେଠି ଲୋକଙ୍କୁ ସାମାନ୍ୟ ଭାବଗତ ପ୍ରସ୍ତରର ଉପରକୁ ଉଠେଇବା ଆଉ ସମ୍ଭବ ନ ଥିଲା । ଲୋକେ ଭାବୁଥିଲେ ଯେ ସେମାନଙ୍କର ମୁଣ୍ଡରେ ମସ୍ତିଷ୍କର ସମସ୍ତ ଚେତନା ଲିଭି ଆସିଥିଲା । ସେମାନେ ମାନବସମାଜର କେତେକ ଫୋପଡ଼ା ଅଲୋଡ଼ା ଜଞ୍ଜାଳ । ତାଙ୍କୁ ଶିକ୍ଷାଦେଇ କୌଣସି ଦେଖାଇପାରିବା ଭଳି ଉନ୍ନତି କେବଳ ଉଦ୍ଭଟ କଳ୍ପନା ବୋଲି ମନେ କରାଯାଉଥିଲା ।

କିନ୍ତୁ ସେଇଠାରେ ନେତା, ନାୟକ, ପଥପ୍ରଦର୍ଶକ ଗଢ଼ି ବସିଲେ ମିସେସ୍ ଲୟୁଡ୍ ।

ସବାରୁ ଫେରି ମିସେସ୍ ଲୟୁଡ୍ ତାଙ୍କର କଲେଜବେଳର ଓ ଖବରକାଗଜ ସଂପର୍କିତ କେତେକ ସାଙ୍ଗମାନଙ୍କ ନିକଟକୁ ପତ୍ର ଲେଖିଲେ । ସେମାନେ କେହି ଧନୀ ନ ଥିଲେ । ଅଧିକାଂଶ ତାଙ୍କର ନାରୀ ବନ୍ଧୁ ।

ଅଳ୍ପ ସମୟ ପରେ ୧୩ ମାଇଲ୍ ଦୂରର ନିକଟତମ ରେଲ୍‌ଓ୍ୱେ ଷ୍ଟେସନରେ ଅନେକ ବାକ୍ସ ଓ ବଣ୍ଡିଲ୍ ଜମା ହେବାର ଦେଖାଗଲା । ମିସେସ୍ ଲୟ୍‌ଡ୍‌ଙ୍କର ଗୃହଲଗାଟି ବନ୍ଧୁ ତାଙ୍କର ଘରମାନଙ୍କରେ ଯାହା କିଛି ଅଦରକାରୀ ବୋଲି ଜମା କରି ରଖିଥିଲେ, ସେଥିରୁ କିଛି କିଛି ପଠାଇବାକୁ ଆରମ୍ଭ କଲେ । ଲୁଗା, ଯୋତା, ଚୁଡ଼ି, କଣ୍ଢା ପର୍ଯ୍ୟନ୍ତ ବାଦ ଯାଇନାହିଁ । ୫୦୦୦ ଡଲାରର ଏକ ଚେକ୍ ମଧ୍ୟ ଆସି ପହଞ୍ଚିଲା । କିନ୍ତୁ ଏହି ଦ୍ରବ୍ୟ ଓ ଅର୍ଥଦାନ ଅପେକ୍ଷା ବଡ଼ ଦାନ ହେଲା ଶ୍ରମଦାନ । ପ୍ରସିଦ୍ଧ କଲେଜ ଓ ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ୍ ଓ ନର୍ସମାନେ ବିନା ମଇଁସାରେ କାନେ ସ୍କୁଲରେ କିଛି କିଛି ସମୟ କାମ କରିବା ପାଇଁ ଲେଖି ଜଣାଇଲେ ।

ଯେଉଁସବୁ ଜିନିଷ ଆସି ପହଞ୍ଚିଲା, ସେସବୁକୁ ନେଇ ବିଦ୍ୟାଳୟ ଗୃହରେ ଏକ ଦୋକାନ ଖୋଲାଗଲା । ଏ ଦୋକାନରେ ମୁଦ୍ରାର ବ୍ୟବହାର ହୁଏ ନାହିଁ । ପାହାଡ଼ୀ ଲୋକେ ଅଣ୍ଡା, ମାଂସ, ଶସ୍ୟ ପ୍ରଭୃତି ବଦଳରେ ଏଠୁ ଜିନିଷ ଓ ପୋଷାକପତ୍ର ପାଇଥାନ୍ତି । କାନେ ସ୍କୁଲ୍ ଓ କଲେଜର ପିଲାଙ୍କ ଅଧେ ଖାଦ୍ୟ ଏଇଥିରୁ ଜୁଟିଯାଏ । ସେ ଦୋକାନ ଏପର୍ଯ୍ୟନ୍ତ ଚାଲିଛି । କାନେଗୋଷ୍ଠୀ-ଯୋଜନା-କେନ୍ଦ୍ରର ଏହା ଏକ ଦେଖିବାର ଅନୁଷ୍ଠାନ ।

ଏଣେ ସ୍ୱେଚ୍ଛାସେବକ ଶିକ୍ଷକମାନଙ୍କୁ ନେଇ କାନେର ନୂଆ ସ୍କୁଲ୍ ଖୋଲା ହେଲା । ପୁରୁଣା ଅବଧାନ କାମୋଡ଼ର ହ୍ଲୋନ୍ ଯାଇ ପିଲାଙ୍କ ମେଣ୍ଢରେ ଛିଡ଼ ହୋଇ ବସିଲା ଏବଂ କହିଲା "ମୋର ସ୍ଥାନ ବର୍ତ୍ତମାନ ଏଇଠାରେ ।"

## ୩

## — ନିଜର ସ୍କୁଲ —

କାନେକୋର ଓ ଆଖପାଖ ଗ୍ରାମମାନଙ୍କର ସହଯୋଗ ଓ ଆଲିସ୍ ଲୟ୍‌ଡ୍‌ଙ୍କ ବନ୍ଧୁବାନ୍ଧବୀମାନଙ୍କ ନିକଟରୁ ଭିକ୍ଷାଲବ୍ଧ ଅର୍ଥର ସମନ୍ୱୟରେ କାନେକୋରର ମୁମୂର୍ଷୁ କାଠପଟାର ଗୃହଶାଳୀ ଉପରେ ଏକ ସୁଦୃଶ୍ୟ ଓ ସୁଦୃଢ଼ ପ୍ରାଇଭେଟ୍ ସ୍କୁଲଗୃହ ଠିଆ କରିବାକୁ ବେଶି ଡେରି ହୋଇ ନ ଥିଲା । ଛ'ଟି ବଖରାର ଏକ ଲମ୍ବାଘର, କାନ୍ଥ କେବଳ ଫରକାର ପର୍ଯ୍ୟାୟ କହିଲେ ଚଳେ । କାନ୍ଥବାଡ଼ ଚୂନ ଧଳା । ଏ ଘର ସମ୍ପୂର୍ଣ୍ଣ ହେଲା ପରେ ସେ ଅଞ୍ଚଳରେ କୋଶ କୋଶ ଦୂରରୁ ଲୋକେ କାନେ କୋରକୁ ଦୌଡ଼ିଲେ ଖାସ୍ ଏଇ ନୂଆ ଧରଣର ଘର ଦେଖିବାକୁ । କାରଣ ଫରକା ଥିବା ଚୂନ-ଧଳା ପକ୍କାଘର କଳ୍ପନା ସେ ଅଞ୍ଚଳର ଲୋକଙ୍କର ଅଭିଜ୍ଞତାର ବାହାରେ ଥିଲା ।

ସେ ହେଲା ୧୯୧୬ ସାଲର ବ୍ୟାପାର । ତାର ତିନିବର୍ଷ ପରେ ୧୯୧୯ ସାଲରେ ମିସେସ୍ ଲୟ୍‌ଡ୍ ଗୋଟିଏ ହାଇସ୍କୁଲ ଆରମ୍ଭ କଲେ । ପଚିଶ ବର୍ଗମାଇଲ ଭିତରେ ସେ ହେଉଛି ପ୍ରଥମ ହାଇସ୍କୁଲ—ସ୍ଥାନୀୟ ଲୋକଙ୍କ ମାନସିକ ସ୍ତରରେ ଏକ ଅକଳ୍ପନୀୟ ବ୍ୟାପାର । ପ୍ରଥମେ ମୋଟ ଛାତ୍ର ସଂଖ୍ୟା ଥିଲା ମାତ୍ର ଦୁଇଟି । ହାଇସ୍କୁଲ ବୋଲି କୌଣସି ସ୍ୱତନ୍ତ୍ର ଘର ମଧ୍ୟ ନ ଥିଲା । ମିସ୍ ଜୁନ ବ୍ୟୁକାନ ନାମ୍ନୀ ମିସେସ୍ ଲୟ୍‌ଡ୍‌ଙ୍କର ଏକ ସହକାରିଣୀଙ୍କ ଘରେ ହିଁ ହାଇସ୍କୁଲର ଆରମ୍ଭ । ଏହି ମିସ୍ ଜୁନ ୧୯୧୯ର କ୍ରିସମାସ-ଛୁଟି କଟେଇବା ପାଇଁ ଉତ୍ତର ଆମେରିକାରୁ ଦକ୍ଷିଣ ଦିଗକୁ ଯାଉଁ ଯାଉଁ ବାଟରେ କୌତୂହଳବଶତଃ କାନେ କୋର ଦେଖିବାକୁ ଆସିଥିଲେ । ସେ ସିରାକ୍ୟୁଜ୍ ବିଶ୍ୱବିଦ୍ୟାଳୟର ଗ୍ରାଜୁଏଟ ।

ସେତେବେଳେ ସେ ବେଲେସ୍‌ଲ୍ କଲେଜରେ ପୋଷ୍ଟ ଗ୍ରାଜୁଏଟ ଅଧ୍ୟୟନ କରୁଥାଆନ୍ତି । ସେ ଅଜ ଦକ୍ଷିଣକୁ ଗଲେ ନାହିଁ । ମିସେସ୍ ଲସ୍ଟଭ୍ଙ୍କ ସାଥିରେ ତାଙ୍କର ସେବା କାମରେ ସେ କାନେ କୋରରେ ଛଅମାସ କଟାଇ ପୁଣି କଲେଜରେ ପାଠ ଶେଷ କରିବାକୁ ଗ୍ଲଲଗଲେ । କିନ୍ତୁ କାନେକୋର ପୁଣି ତାଙ୍କୁ ଟାଣିଲା । ସେ ଜୀବନରେ କୌଣସି ଗୋଟିଏ ମହତ୍ କର୍ମ କରିବାର କଳ୍ପନା କରୁଥିଲେ । ମିସେସ୍ ଲସ୍ଟଭ୍ ଓ କାନେକୋରର ପ୍ରାରମ୍ଭିକ ଅନୁଷ୍ଠାନ ଦେଖି, ସେ ସ୍ଥିର କଲେ ଯେ ସେଇ ହେଉଛି ତାଙ୍କ ଜୀବନର ପ୍ରକୃତ କର୍ମକ୍ଷେତ୍ର, ମାନବର ସେବାରେ ଜୀବନକୁ କୃତାର୍ଥ କରିବାର ପ୍ରକୃତ ସ୍ଥଳ । ସେ ପାଠ ଶେଷ କରିବା ସଙ୍ଗେ ସଙ୍ଗେ କାନେକୋରକୁ ଘୁଣି ଗ୍ଲଲ ଆସିଲେ । ସେଠି ସେ ଗତ ୩୭ ବର୍ଷ ହେଲା ଏକାଧାରରେ କାମ କରି ଆସୁଛନ୍ତି । ପାଠ ପଢ଼େଇବାଠୁ, ଗାମନ ମାଜିବା ଓ ଧାଉଁକାମ କରିବା ଯାଏଁ, ଏପରି କୌଣସି ସମସ୍ୟା କାନେକୋର ଅଞ୍ଚଳରେ ନାହିଁ, ଯେଉଁଠି ମିସ୍ ଜୁନଙ୍କ କଲ୍ୟାଣମୟ ହସ୍ତ ନ ଥିବ । ମିସେସ୍ ଲସ୍ଟଭ୍ଙ୍କ ପରକୁ ମିସ୍ ଜୁନ୍ ହିଁ ଏବେ କାନେ କେନ୍ଦ୍ରର ସର୍ବମୟୀ କର୍ତ୍ତ୍ରୀ ।

ବହୁ କଷ୍ଟରେ ପ୍ରଥମର ଦୁଇଟି ପିଲା, କ୍ରମେ ପାଞ୍ଚଟି ହେଲେ । ମିସେସ୍ ଲସ୍ଟଭ୍ ଓ ମିସ୍ ଜୁନ ହାଇସ୍କୁଲ ପାଇଁ ଜନସାଧାରଣରୁ କୌଣସି ଉତ୍ସାହ ପାଇଲେ ନାହିଁ । ଲୋକେ କହିବାକୁ ଲାଗିଲେ "ଏଇ ବିଦେଶୀ ସ୍ତ୍ରୀମାନେ ଆମ ପିଲାଙ୍କୁ ଲାଟିନ୍ ପ୍ରଭୃତି ବିଦେଶୀ ଭାଷା ପଢ଼େଇବାକୁ ବସିଛନ୍ତି । ସେଥିରେ ଆମର ବା ଆମ ପିଲାଙ୍କର କି ଲାଭ ହେବ ?" ଲୋକଙ୍କର ସାଧାରଣ ଧାରଣା ଥିଲା ଯେ ଏ ପାହାଡ଼ୀ ଅଞ୍ଚଳର କେହି ପିଲା ଅଷ୍ଟମ ଶ୍ରେଣୀଠୁ ଉପରକୁ ଯିବା ଅସମ୍ଭବ ।

କିନ୍ତୁ ମିସ୍ ଜୁନ୍ ବା ମିସେସ୍ ଲସ୍ପୁଢ୍ ସମସ୍ତ ବାଧା, ସନ୍ଦେହ, ଅବିଶ୍ୱାସ ଓ ନୈରାଶ୍ୟ ସତ୍ତ୍ୱ କେବେ କୌଣସି ବାପ ମା ବା ଅଭିଭାବକଙ୍କୁ ତାଙ୍କ ସ୍କୁଲକୁ ପିଲା ପଠାଇବା ପାଇଁ ଅନୁରୋଧ କରି ନ ଥିଲେ । ସେମାନେ ସମସ୍ତ ପ୍ରକାର ପ୍ରୋପାଗାଣ୍ଡା ବା ପର-ପ୍ରଚାରର ବିରୋଧୀ । ସେମାନେ ମୂଳରୁ ଧରି ନେଇଥିଲେ ଯେ, ତାଙ୍କର କାର୍ଯ୍ୟକ୍ରମରେ ବାଧ୍ୟବାଧକତା ବା ଠାଉଠିଆ କୌଣସିଟିର ସ୍ଥାନ ନାହିଁ । କାରଣ ସ୍କୁଲର ପ୍ରତି ଛାତ୍ର ଓ ଛାତ୍ରୀ ହିଁ ତାଙ୍କର ହେବେ ଶ୍ରେଷ୍ଠ ପ୍ରଚାରକ । ତାଙ୍କୁ ଦେଖି ହିଁ ଲୋକେ ତାଙ୍କ ପିଲାଙ୍କୁ ପଠାଇବାକୁ ଚାଲି ଆସିବେ । ସେତେବେଳେ ସ୍କୁଲ ହେବ ଲୋକଙ୍କର ନିଜର । ସେତିକିବେଳେ ଯାଇ ପ୍ରକୃତ ସ୍କୁଲ ଏଠି ଆରମ୍ଭ ହେବ ।

ଏହି ପ୍ରକାର ପରୀକ୍ଷା ଓ ଚିନ୍ତାର ଅଗ୍ରଗାମୀଙ୍କୁ ସିଦ୍ଧି ମିଳିବାକୁ ବେଶି ଡେରି ହୋଇ ନ ଥିଲା ।

ଯୁକ୍ତରାଷ୍ଟ୍ରର ରାଜଧାନୀ ୱାଶିଂଟନ ସହରରେ କେତେକ ଶିକ୍ଷାବିତ୍‌ଙ୍କର ଏକ ସଭା ହୋଇଥିଲା । ମିସ୍ ଜୁନ ସେଥିରେ ଯୋଗଦେବାକୁ ଗଲାବେଳେ ତାଙ୍କର ପାଞ୍ଚଟି ହାଇସ୍କୁଲ ଛାତ୍ରଙ୍କୁ ମଧ୍ୟ ସାଥିରେ ନେଇ ଯାଇଥିଲେ, କାରଣ ସେ ଭାବିଥିଲେ ଯେ ସେମାନେ ବାହାର ଜଗତ୍ ଦେଖି କିଛି ଶିକ୍ଷା ପାଇ ପାରିବେ ।

ସଭାରେ ପ୍ରଧାନ ଆଲୋଚ୍ୟ ବିଷୟ ଥିଲା, ଯୁକ୍ତରାଷ୍ଟ୍ରର ପଶ୍ଚିମାଞ୍ଚଳର ଏକ ଷ୍ଟେଟ୍‌ର ଏକ ହାଇସ୍କୁଲର ପିଲାମାନଙ୍କର ଅଶୋଭନୀୟ ଗୁଣ୍ଡାମି ନେଇ । ସେଠି ପିଲେ ସ୍କୁଲର ଝରକାଯାକର କାଚ ଭାଙ୍ଗି ନେଇଛନ୍ତି । କବାଟ ସବୁ ଟାଣି ବାହାର କରି ଦେଇଛନ୍ତି । ବଗିଚାର ଫୁଲଗଛ ସବୁ ମଧ୍ୟ ଉପାଡ଼ି ପକାଇଛନ୍ତି ।

ଯେତେ ଚେଷ୍ଟା କଲେ ମଧ୍ୟ ଗୁଣ୍ଡାମାନଙ୍କୁ ଗ୍ରାମମାନେ ସଙ୍ଘବଦ୍ଧ ଭାବରେ ଘୋଡ଼ାଇ ରଖିଛନ୍ତି । ହେଡ୍‌ମାଷ୍ଟର ବର୍ତ୍ତମାନ ଉପଦେଶ ମାଗୁଛନ୍ତି "କ'ଣ କରାଯିବ ?"

କେହି ଉତ୍ତର ଦେବା ପୂର୍ବରୁ ଦେଖାଗଲା ଯେ ଜୁନଙ୍କ ପାଞ୍ଚଟି ପାହାଡ଼ୀ ପିଲାଙ୍କ ଭିତରୁ ଜଣେ କହିବାକୁ ଠିଆହେଲା । ସେ ଭୟରେ ପଥର ପାଲଟିବାକୁ ଆରମ୍ଭ କଲେ । ପିଲଗୁଡ଼ିକୁ ସେ ଦର୍ଶକ ଭାବରେ ଆଣିଥିଲେ, ଆଲୋଚନାରେ ଭାଗ ନେବାକୁ ନୁହେ । ପୁଣି ଏପରି ପଣ୍ଡିତମଣ୍ଡଳୀରେ ଏଇ ବଣୁଆ ପିଲା କ'ଣ ନାଇଁ କ'ଣ କହିବ ! କି ଲଜ୍ଜାର କଥା ! !

କିନ୍ତୁ ପିଲଟି ଧୀରଭାବରେ କହିଲା "ଆପଣମାନେ ଅନୁମତି ଦେଲେ, ମୁଁ ଆପଣମାନଙ୍କୁ କିଛି ଦଅନ୍ତି, କଣ କରିବାକୁ ହେବ ।"

ସଭାପତି କହିଲେ "କହ କହ ।"

ପିଲାଟି ସେ ଯେଉଁଠି ବସିଥିଲା ସେଠି ଠିଆହୋଇ କହିଲା ନାହିଁ । ସେ ସିଧା ଗଲା ପ୍ଲାଟଫର୍ମ ଉପରକୁ ଏବଂ ଉପସ୍ଥିତ ବିଦ୍ୱାନ୍‌ମଣ୍ଡଳୀର ଗମ୍ଭୀର ନୀରବତାର ସମ୍ମୁଖୀନ ହୋଇ ନିର୍ଭୀକ ଭାବରେ କହିବାକୁ ଲାଗିଲା, "ଲୋକେ ନିଜର ଜିନିଷ ଭାଙ୍ଗନ୍ତି ନାହିଁ । ମୁଁ କହିବି ଯେ ତମର ପିଲେ ସେ ହାଇସ୍କୁଲକୁ ନିଜର ବୋଲି ମନେ କରନ୍ତି ନାହିଁ । ଅନ୍ୟମାନେ ତାକୁ ତିଆରି କରିଥିଲେ ଏବଂ ଅନ୍ୟମାନେ ତାର ଯତ୍ନ ନିଅନ୍ତି ଓ ନେବେ । ଆପଣଙ୍କର ବଡ଼ ପିଲାଗୁଡ଼ିକୁ ସେମାନଙ୍କର ନିଜର ସ୍କୁଲଟିକୁ ଯତ୍ନରେ ରଖିବାର ଦାୟିତ୍ୱ ଦେଇ ଦଅନ୍ତୁ, କୁଆଡ଼ ଝରକା ଭାଙ୍ଗିଲେ ମରାମତି କରିବାପାଇଁ ଦାୟୀ ରଖନ୍ତୁ, ଦେଖିବେ ଆପଣଙ୍କ ସ୍କୁଲରେ ଆଉ କିଛି ଗୋଳମାଳ ହେବନାହିଁ । ଆପଣମାନଙ୍କୁ ଧନ୍ୟବାଦ ।"

ସେ ଯେତେବେଳେ ନିଜ ଜାଗାକୁ ଫେରଆସିଲା, ସଭାଗୃହ କରତାଳି ଶବ୍ଦରେ ଧ୍ୱନିତ ହୋଇ ଉଠିଲା । ସଭାପତି କହିଲେ, "କେଣ୍ଟୁକିର ଏଇ ବଣୁଆ ପିଲା, ଗଣତନ୍ତ୍ରର ପ୍ରଥମ ନୀତି ଆମକୁ ଶିକ୍ଷା ଦେଇଗଲା । ଆମେ ସେଇଟିକୁ ଭୁଲି ଯାଇଥିଲୁ । ସେ ଠିକ୍ କଥା କହିଲା ।"

ଅନୁନ୍ନତ ପାହାଡ଼ୀ ଅଞ୍ଚଳର ଗୋଟିଏ ପିଲା ସାରା ଦେଶର ରାଜଧାନୀରେ ପଣ୍ଡିତ ଲୋକଙ୍କ ଆଗରେ ଠିଆ ହୋଇ ଦୁ'ପଦ କଥା କହିଲା; ପୁଣି ସେଥିପାଇଁ ବହୁମାନ ପାଇଲା, ଯାହାଠୁ ଆଉ ବଡ଼ ସାର୍ଟିଫିକେଟ କ'ଣ ଥାଇପାରେ ? ମିସ୍ ଜୁନଙ୍କ ସ୍କୁଲରେ ଛାତ୍ରସଂଖ୍ୟା ସାଙ୍ଗେ ସାଙ୍ଗେ ପାଞ୍ଚରୁ ଦଶକୁ ଉଠିଗଲା । କାନେ ହାଇସ୍କୁଲର ପ୍ରକୃତ ଆରମ୍ଭ ହେଲା । କିନ୍ତୁ ତଥାପି ମିସେସ୍ ଲୟୁଡ଼୍ କାନେ ବା ଅନ୍ୟତ୍ର ପ୍ରାଇମେରୀ ବା ହାଇସ୍କୁଲ ବସେଇବା ପାଇଁ କୌଣସି ପ୍ରକାର ପ୍ରଚାର କେବେ ହେଲେ କରି ନାହାନ୍ତି । ମିସେସ୍ ଲୟୁଡ଼ଙ୍କ ମତରେ "ଯଦି କୌଣସିଠାରେ ଲୋକେ ହାଇସ୍କୁଲ ଚାହାନ୍ତି, ତେବେ ସେମାନେ ଆମ ପାଖକୁ ଆସି ହାଇସ୍କୁଲ ପାଇଁ କହିବେ । ସ୍କୁଲସବୁ ଲୋକଙ୍କର ନିଜର ହେବା ଉଚିତ ।"

ନିକଟବର୍ତ୍ତୀ ମେ'ଟାଉନର ପ୍ରାଇମେରୀ ସ୍କୁଲ କମିଟି ଦିନେ ମିସେସ୍ ଲୟୁଡ଼ଙ୍କ ପାଖକୁ ଆସି କହିଲେ "ଆମେ ହାଇସ୍କୁଲଟିଏ ଚାହୁଁ । କିନ୍ତୁ ଏଠାର ଶିକ୍ଷକମାନଙ୍କ ପରି ଶିକ୍ଷକ ଆମେ କେମିତି ପାଇବୁ ?"

ମିସେସ୍ ଲୟୁଡ଼୍ କହିଲେ—"ଆଗେ ପ୍ରମାଣ କର ଯେ ସେଠାର ଲୋକେ ପ୍ରସ୍ତାବିତ ହାଇସ୍କୁଲ୍ ପଛରେ ଅଛନ୍ତି; ତେବେ ତୁମକୁ ଶିକ୍ଷକ ଯୋଗେଇ ଦେବୁ ।"

ସେ ଅଞ୍ଚଳର ଲୋକେ ବର୍ତ୍ତମାନକୁ ବୁଝିଲେଣି ଯେ ଶିକ୍ଷକ ହିଁ ସ୍କୁଲର ପ୍ରଧାନତମ ଉପାଦାନ । ସବୁ ପରିବର୍ତ୍ତନ ଓ ଉନ୍ନତିର ମୂଳ ସେଇଠି ।

ସେ' ଟାଉନରେ ଏକ ସଭା ହେଲା । ଅଧିକାଂଶ ଲୋକ —ଆମ ପିଲାଙ୍କର କ'ଣ ଉପକାର ହେବ ଆମକୁ ଜଣାନାହିଁ ଯେ, ଏଇ ବାହାରର ଭେଡେଟା ସ୍ତ୍ରୀଲୋକ ଆମକୁ ବକ୍ତୃତା ଦେବେ —ଏଇ ଅବିଶ୍ୱାସନେଇ ଆସିଥାନ୍ତି । କିନ୍ତୁ ଏ ସଭାର ବକ୍ତା ବିଦେଶୀ ସ୍ତ୍ରୀ ଲୋକ ନ ହୋଇ, ହେଲେ ପ୍ରକୃତରେ କାହେନ ହାଇସ୍କୁଲର ସେହି ପ୍ରଥମ ଦଶଟି ଛାତ୍ର । ମିସେସ୍ ଲୟ୍ଡ୍ ସେମାନଙ୍କୁ ସ୍ଥାନୀୟ ଜନତାର ନେତାରୂପେ ଗଢ଼ିବାକୁ ସ୍କୁଲ ଆରମ୍ଭ କରି-ଥିଲେ । ସେମାନେ ସେଇ ଆଦର୍ଶକୁ ପ୍ରତ୍ୟକ୍ଷରେ ପ୍ରମାଣିତ କରିଦେଲେ । ସେ' ଟାଉନର ଲୋକେ ଅଶ୍ଚର୍ଯ୍ୟ ହୋଇ ଶୁଣିଲେ । ପାହାଡ଼ୀ କିଶୋରଗଣ ଡାକି ଉଠିଲେ "ଜାଗ୍ରତ ହୁଅ ! ଆମେ ଏକ ଯୁଗରେ ବାସ କରୁଛୁ, ଯାହା ଲୋକସ୍ମୃତିରୁ ଲୁପ୍ତ ହୋଇ-ଗଲାଣି । ଆମକୁ ନୂତନ ଯୁଗର ମନୁଷ୍ୟ ହେବାକୁ ହେବ ।" ସେ ଟୋକାଏ ନିର୍ଭୀକଭାବରେ ଏପରି ବକ୍ତୃତା ଦେଲେ, ଯେପରି ଯେକୌଣସି ପିତାମାତା ତାଙ୍କୁ ନେଇ ଗର୍ବ କରିବ । ଆମେରିକାର ସମଗ୍ର ଇତିହାସରେ ବାରଠୁ ତେର ବର୍ଷର ପିଲେ ଶିକ୍ଷା ବିସ୍ତାର ପାଇଁ ଏପରି ପ୍ରବର୍ତ୍ତକ ହେବାର ଦୃଷ୍ଟାନ୍ତ ଦେଖା ନଥିଲା । ସେ' ଟାଉନରେ ହାଇସ୍କୁଲ ଆରମ୍ଭ ହୋଇଗଲା ।

ତା'ପରେ ଶୀଘ୍ର ପାଳି ପଡ଼ିଲା ୩୬ ମାଇଲ ଦୂରବର୍ତ୍ତୀ ବିଭର୍ କ୍ରିକ୍ ଗାଁର ।

ମିସେସ୍ ଲସ୍କୃଡ୍‌ଙ୍କ ଅନୁରୋଧରେ ଏଡ଼ନା ଡ୍ରୁଜଏସ ନାମ୍ନୀ ଥିଭ ଏକ ନାସ୍ ଗ୍ରାଜୁଏଟ ସେଠାକୁ ସ୍ୱେଚ୍ଛାସେବକ ଶିକ୍ଷକ ଭାବରେ ଯାଇଥିଲେ । କିନ୍ତୁ ସେ ସ୍ଥାନ ଏପରି ଅପରିଷ୍କୃତ, ଅପରିଚ୍ଛନ୍ନ ହୋଇ ରହିଥିଲା ଯେ, ସେଠାରେ ରହିବା ତାଙ୍କ ପକ୍ଷରେ ଅସହ୍ୟ ହେଲା । ସେ କାନେ ସ୍କୁଲକୁ ଖବର ଦେଲେ । ଜୁନ ୬ ତାଙ୍କର ଦଶଟି ସ୍ଥଳ ସେଇ ଦୀର୍ଘପଥର ଅଧିକାଂଶ ପଦବ୍ରଜରେ କିଛୁ ବାଟ ଟ୍ରେନରେ ଗଲେ । ଏଡ଼ନା ଡ୍ରୁ୍ୟଏସ ସ୍ଥାନୀୟ ସ୍କୁଲର ପିଲାଙ୍କୁ ମଧ୍ୟ ଯୋଗାଡ଼ କରିଥାନ୍ତି । କାନେ ପିଲାଙ୍କ ନେତୃତ୍ୱରେ ସେମାନେ ସମଗ୍ର ଷ୍ଟେଟ ସହରଟିକୁ ସଫା କରିବାରେ ଲାଗିଗଲେ । ପିଲେ ପହଁରା, କୋଡ଼ି, କୋଦାଳ, ଶାବଳ, ଶଗଡ଼ ସବୁ ଯୋଗାଡ଼ କରି ରଖିଥିଲେ । ଯାହା ଦହନୀୟ ଥିଲା, ସେସବୁକୁ ଗଦାକରି ବସ୍ଠ ଅଇଘର କରି ଦିଆଗଲା । ବାକୀ ମଇଳା ବଡ଼ ବଡ଼ ଗାତରେ ପୋତି ଦିଆଗଲା । ଦଳ ଦଳ ପିଲାଙ୍କୁ ସହରର ଭିନ୍ନ ଭିନ୍ନ ଅଂଶର ଭାର ଦିଆ ଯାଇଥିଲା । ଏ କାମରେ ପ୍ରତି ଦଳ ଅନ୍ୟ ଦଳ ସହିତ ପ୍ରତିଯୋଗିତା କଲେ, ସବୁଠାରୁ ଭଲ ରେକର୍ଡ଼ ପାଇବା ପାଇଁ ।

ସେ ରାତିରେ ବାଭର୍‌ଜିଭ୍‌ର ନାନା ପରିବାରରେ କାନେର ପିଲାମାନେ ଅତିଥିହେଲେ ଏବଂ ସକାଳୁ ପୁଣି ୩୬ମାଇଲ ଦୂରର କାନେ ଜୋରକୁ ଯାତ୍ରା ଆରମ୍ଭ କଲେ । କିନ୍ତୁ ସେମାନେ ବାଭର୍‌କିକ୍‌କୁ ଛାଡ଼ି ଦେଇଗଲେ, ସେଇ ପାହାଡ଼ୀ ଅଞ୍ଚଳର ପରିଚ୍ଛନ୍ନତମ ସହର ଭାବରେ । ସରକାର, ରେଳବିଭାଗ, ପୋଷ୍ଟ ଅଫିସ ଏବଂ ଲୋକେ—ସମସ୍ତେ ବର୍ତ୍ତମାନ ସଚେତନ ହେଲେ । ବାଭର୍‌କିକ୍ ଆଉ କେବେ ନିଜକୁ ଅପରିଚ୍ଛନ୍ନ ହେବାକୁ ଦେଇ ନାହିଁ ।

୧୯୧୯ରେ ଯେଉଁଠି ଗୋଟିଏ ହେଲେ ହାଇସ୍କୁଲ ନଥିଲା, ଏଭଳି ଭାବରେ ଏବେ ସେ ଅଞ୍ଚଳରେ ପନ୍ଦରଟି ହାଇସ୍କୁଲ ଗଢ଼ି ଉଠିଛି । କାନେକୋରର ହାଇସ୍କୁଲ ଏବେ କାନେ କଲେଜରେ ପରିଣତ ହୋଇଛି ଏବଂ ଏହା ଚତୁଃପାର୍ଶ୍ୱର ଏଇ ହାଇସ୍କୁଲ-ଗୁଡ଼ିକର ଅଧିକାଂଶ ଶିକ୍ଷକ ଏଇ କାନେ କଲେଜର ହିଁ ସ୍ନାତ । ମିସ୍ ଜୁନ ଯେତେବେଳେ ପାଞ୍ଚଟି ପିଲା ନେଇ କାନେ କୋରରେ ହାଇସ୍କୁଲ ଆରମ୍ଭ କଲେ, ସେତେବେଳେ ସେମାନେ ଡାହାଣ ଓ ବାମ ଗୋଡ଼ର ଫରକ ଜାଣି ନଥିଲେ । ଏବେ ସେଇ ଜାଗାରୁ କାନେ କଲେଜ ୧୦୫ ହେଡ଼୍ ଶିକ୍ଷକ ଓ ଦୁଇଟି ଜିଲ୍ଲା ସ୍କୁଲ ଇନ୍‌ସପେକ୍ଟର ଯୋଗାଇ ସାରିଲାଣି ।

---

୪

## — କାନେ କଲେଜ —

ଅଜକାଲର ଏଇ ଟେଲିଭିଜନ, ପ୍ରଶସ୍ତ ସମତଳ ରାଜପଥ, ବିରାଟ ବିପଣିସମୂହ ଓ ଅଭ୍ରଂଲିହ ଅଟ୍ଟାଳିକାମାନଙ୍କର ଯୁଗରେ କାନେ କଲେଜକୁ ବର୍ଣ୍ଣନା କରିବା ସହଜ କଥା ନୁହେଁ । କୌଣସି ପବ୍ଲିକ ଯାନ ସେଠିକି ଯାଏନା । ସେ ଅଞ୍ଚଳକୁ ରେଳ ବା ଜଳଜାହାଜ ଏପର୍ଯ୍ୟନ୍ତ ପ୍ରବେଶ କରି ନାହିଁ । ସେଠାକୁ ଗଲା ମାନେ ଗୋଟିଏ ବିସ୍ମୃତ ଯୁଗକୁ ଫେରିଯିବା । ପିପାପାସ୍ ଗାଁ, ଯେଉଁଠି କାନେ କଲେଜ ଠିଆ ହୋଇଛି, ତାର ନାଁ ଗୋଟିଏ ଦାଣ୍ଡ । ପୁଣି ସେଇ ଦାଣ୍ଡ ଖରାଦିନେ ହୁଏ ଧୂଳିମୟ ଆଉ ଶୀତଦିନେ ହୁଏ କର୍ଦ୍ଦମାକ୍ତ । ଯଦି ସ୍ନାନକୁଣ୍ଡ ବା ଘର ଭିତରେ ରହୁ ଶୌଚକ୍ରିୟା ତମର ଅଭ୍ୟାସ ଏବଂ ତମେ ଯଦି ତାହା ସେଠି ଆଶା କରୁଥାଅ, ତେବେ ତମେ ଆଉ ଆଗକୁ ଯାଅନି, ସଭ୍ୟତାକୁ ଫେରିଆସ ।

କନ୍ଟୁ କବି ବ୍ରାଉନିଙ୍କର ଏକ ବିଖ୍ୟାତ କବିତାର ନାମାନୁସାରେ ନାମିତ ଏହି କ୍ଷୁଦ୍ର ଗ୍ରାମ, ପ୍ରକୃତରେ ସେହି କବିତା ପରି ପ୍ରେରଣା ଆଣି ଦେଉଛି । ସେ କବିତାରେ ବାଳିକା ପିପା ଗାଉଛି—

ଉପରେ ଅଛନ୍ତି ଈଶ୍ୱର
ସୁଖେ ପୂରିଛି ଧରିତଳ ।

ସେଇ ନାମକ ଏଇ ଗାଁରେ ସମଗ୍ର ଧରାରେ ସବୁଠାରୁ ଏକ ଅସାଧାରଣ ଆଦର୍ଶ-ଅନୁପ୍ରାଣିତ କଲେଜ ସ୍ଥାପିତ ହୋଇପାରିଛି । ଯଦି ତମେ ମନୁଷ୍ୟର ଚେଷ୍ଟା ଓ ସାହସକୁ ପ୍ରତ୍ୟକ୍ଷ କରିବାକୁ ଚାହଁ, ତେବେ ପିପାପାସ୍‌କୁ ଚାଲ ।

କାନେ ଜୁନପୁର କଲେଜଟି ଅକ୍ଷରକ ଭାବରେ ମନୁଷ୍ୟର ସ୍ନେହ, ପିଠି-ଭଙ୍ଗା ଶ୍ରମ, ଘୋଡ଼ା-ଖେଚରଙ୍କ ସହଯୋଗ ଓ ଅସ୍ତ୍ର-ବାଷ୍ପାସର ମିଳିତ ଶକ୍ତିରେ ଏକ ପାହାଡ଼ ଦେହରୁ ଖୋଳା ହୋଇଛି। ଏହାର ବର୍ତ୍ତମାନ ପ୍ରାୟ ପଚ୍ଚଶଟି ଘର ଅଛି। ସବୁଗୁଡ଼ିକ ଅକାବରେ ଶ୍ଳେଟ ଏବଂ ପଟାରେ ତିଆରି। ପାହାଡ଼ର ଗଡ଼ାଣିଆ କଟିଦେଶରେ ଦୃଢ଼ ହୋଇ ରହିବା ପାଇଁ ସବୁଘରଗୁଡ଼ିକରେ କାଠ ଓ ପଥରର ଭିତ୍ତି ଦିଆ ହୋଇଛି। ପଛରେ ଯେପରି ଖାଲ ପାହାଡ଼, ପଚ୍ଚଶ ଗଜ ଆଗରେ ମଧ୍ୟ ସେହିପରି ପାହାଡ଼ର ପାଚେରି।

ଛାତ୍ରମାନେ ସବୁ କାମ କରନ୍ତି—ବୋଷାଇ ମଧ୍ୟ। କାନେ କଲେଜର ଅଧା ସେମାନେ ତିଆରି କରିଛନ୍ତି; ଆଉ ଅଧାକ ତିଆରି କରିଛନ୍ତି ତାଙ୍କ ବାପମାନେ। ଏ ସବୁର ଶିଳ୍ପୀ କମୋଡ଼ର ସ୍ନୋନ ଯେଉଁ ଘରେ ଜନ୍ମ ହୋଇଥିଲ, ସେଠି ଝରକା ନ ଥିଲ। କିନ୍ତୁ କଲେଜ ହେଲ ବେଳକୁ ସେ ଏ କାମ ପାଇଁ ନିଜକୁ ପ୍ରସ୍ତୁତ କରି ସାରିଥିଲ।

କାନେ କଲେଜରେ ବର୍ତ୍ତମାନ କୋଡ଼ିଏଟି ଲେକ୍‌ଚରର୍। ଆମେରିକାର ପ୍ରସିଦ୍ଧ ଓ ଶ୍ରେଷ୍ଠ ଅନୁଷ୍ଠାନମାନଙ୍କର ଛାତ୍ର ସେମାନେ। ଯେଚ୍ଛାଚାର ସାଉଁଟି ପାଇଲ ଗୃହବସ୍ତି-ଲକ୍ଷ୍ୟ ଶିକ୍ଷକ ସେମାନେ ନୁହନ୍ତି। କଲେଜର ଛାତ୍ର ସଂଖ୍ୟା ବର୍ତ୍ତମାନ ୧୩୫ । ସେମାନେ ସମସ୍ତେ ସେହି କଲେଜରେ ହିଁ ରହନ୍ତି। କିନ୍ତୁ ଏହି ସଂଖ୍ୟାର ବହୁଗୁଣ ତରୁଣ ଓ ତରୁଣୀ ଏହି କଲେଜରେ ଭର୍ତ୍ତି ହେବା ଲାଗି ନିଜର ଡାହାଣ ହାତ କାଟି ଦେବା ପାଇଁ ପ୍ରସ୍ତୁତ ହୁଅନ୍ତେ। କାରଣ ଏ କଲେଜରେ ଭର୍ତ୍ତି ହେବା ହିଁ ଏକ ସମ୍ମାନ। କେବଳ ସେହିମାନଙ୍କୁ ଛାତ୍ରରୂପେ ନିଆଯାଏ, ଯେଉଁମାନଙ୍କ ଭିତରେ କୌଣସି ନା କୌଣସି

ଦିଗରେ ନେତୃତ୍ୱର, ବିଚକ୍ଷଣତାର ସମ୍ଭାବନା ଅଛି । ପଗୃଶ ବର୍ଗମାଇଲ ଦେଶରୁ ପିଲାମାନେ ଏଠିକି ଭର୍ତ୍ତି ହେବାକୁ ଆସନ୍ତି ।

ଧ'ବର୍ଷ ଏଠି ପଢ଼ିବାର କଥା । କେବଳ ଲିଖିତ ପରୀକ୍ଷାରେ ପାଶ କରିବାର ପ୍ରଶ୍ନ ଏଠି ନାହିଁ । ଏଇ ଧ'ବର୍ଷରେ ବସ୍ଥ ହୁଅନ୍ତି କେବଳ ସେଇମାନେ ଯେଉଁମାନେ ସବୁଠାରୁ ଯୋଗ୍ୟତମ । ପ୍ରାୟ ଏକ ତୃତୀୟାଂଶ ଅକୃତକାର୍ଯ୍ୟ ହୋଇ ଫେରିଯାନ୍ତି । ସେଇମାନେ ଏଇ ପାହାଡ଼ୀ ଅଞ୍ଚଳର ପ୍ରାଇଭେଟ ସ୍କୁଲମାନଙ୍କରେ ସାଧାରଣତଃ ଶିକ୍ଷକ ହୁଅନ୍ତି । ଶତକଡ଼ା ଦଶଟି ଯୋଗ୍ୟତମ ଛାତ୍ର କାନେ-ବୃତ୍ତି ପାଇ କେମ୍ବ୍ରିଜ ନିକଟତମ ବିଶ୍ୱବିଦ୍ୟାଳୟକୁ ପଠାଯାନ୍ତି । ସେଠି ଏପର୍ଯ୍ୟନ୍ତ କୌଣସି କାନେ ଛାତ୍ର ଫେଲ୍ ହେବାର ଜଣାଯାଇ ନାହିଁ ।

ଏଇ କଲେଜଟି କାନେ ଗୋଷ୍ଠୀ ଯୋଜନାର ହୃତ୍‌ପିଣ୍ଡ କହିଲେ ଚଳେ । ଦେଢ଼ଶହ ଛାତ୍ର ଥିବା ପ୍ରାଇମେରୀ ଓ ଶହେ ଛାତ୍ର ଥିବା ହାଇସ୍କୁଲଟି ମଧ୍ୟ କଲେଜ ସହିତ ଅନୁଷ୍ଠାନିକ ଭାବରେ ସଂପୃକ୍ତ । ହାଇସ୍କୁଲର ଅଧା ଛାତ୍ରଙ୍କୁ ଏଇ ଅନୁଷ୍ଠାନ ମାଗଣାରେ ରହିବା ଓ ଖାଇବା ଯୋଗାଇ ଦିଏ । ନ ହେଲେ ସେମାନେ ସ୍କୁଲରେ ଯୋଗ ଦେଇ ପାରନ୍ତେ ନାହିଁ—ସେମାନେ ଏତେ ଗରିବ ।

କଲେଜର ନିଜର ଗୋଟିଏ ଷ୍ଟେଟ ଥିଏଟର ଅଛି । ଦୁଇଟି ଲାଇବ୍ରେରୀରେ ପ୍ରାୟ ୩୦ ହଜାର ପୁସ୍ତକ ଗଚ୍ଛିତ । ପ୍ରାୟ ସେଇ ସଂଖ୍ୟକ ବହି ଏ ଅଞ୍ଚଳର ଅନ୍ୟ ସ୍କୁଲମାନଙ୍କୁ ବାଣ୍ଟି ଦିଆ-ହୋଇଛି । କଲେଜର ବିଜ୍ଞାନ-ହଲଟି ଉଚ୍ଚ ବୃକ୍ଷରାଜିରେ ଘେରି ହୋଇ ଏକ ପ୍ରାଚୀନ ସମ୍ମାନିତ ମନ୍ଦିର ପରି ଦଣ୍ଡାୟମାନ ।

କଲେଜର ଜଣେ ଟ୍ରଷ୍ଟୀ ସେହି ବିଜ୍ଞାନ-କୋଠା ଆଡ଼କୁ ହାତ ବଢ଼ାଇ କହିଲେ "କେଣ୍ଟକୀ ଷ୍ଟେଟ୍‌ର ଶ୍ରେଷ୍ଠ ଧାହସିଗ୍ମା ନାଗ୍ରିର ଏଇ ହେଉଛି ଏକ ସୁନ୍ଦର ସ୍ମାରକ ସ୍ତୂପ । ସେ ଯେତେବେଳେ ଏଠିକି ଆସିଲେ ଏଇ ଜାଗାରେ ଗୋଟାଏ ଗ୍ଲେଟ ବୁଦା ବି ନ ଥିଲା । ପାହାଡ଼ ସବୁ ପଦା ହୋଇ ଯାଇଥିଲା, ମାଟିରୁ ସବୁ ଉର୍ବରତା ଚାଲି ଯାଇଥିଲା । ଏବେ କେବଳ କଲେଜର ସମ୍ପତ୍ତିର ମୂଲ୍ୟ ହେବ ଚାରି ଲକ୍ଷ ପଚାଶ ହଜାର ଡଲାର ।"

ସେ କହି ଚାଲିଲେ—"ସେ ଆରମ୍ଭ କଲେ ଦଶଟି ଡଲାର, ଗୋଟିଏ ପୁରୁଣା ଟାଇପରାଇଟର ଓ ଦୁଇଟି ଗ୍ଲୋବସ୍‌କୁ ନେଇ ଯାହାଙ୍କ ଗୋଡ଼ ଯୋଡ଼ା କ'ଣ ଜାଣି ନ ଥିଲା । ପଢ଼େଇବା ପାଇଁ ସେ କାହାଠୁ ଦରମା ବା ରହିବା, ଖାଇବା ପାଇଁ କୌଣସି ଦାମ ଚାହିଁ ନ ଥିଲେ । ଲୋକେ ସ୍ୱେଚ୍ଛାରେ ଯାହା ଦେଉଥିଲେ, ତାହା ବସ୍ତାଏ ଆଳୁ ବା ଏକ ଡଜନ ଅଣ୍ଡାରୁ ବେଶି ମୂଲ୍ୟର ନ ଥିଲା । ପୁଣି ଗତ ଦଶ ବର୍ଷ ହେଲା ସେ ବିନା କଷ୍ଟରେ ଚାଲି ପାରନ୍ତି ନାହିଁ । ତଥାପି ଦେଖ ଏ ସମୃଦ୍ଧି !"

ଏହା କିପରି ସମ୍ଭବ ହେଲା, କି ପ୍ରେରଣା, କି ବିଶ୍ୱାସ, କି ଆଦର୍ଶ ଫଳରେ ଏସବୁ ଅସମ୍ଭବ ଗଢ଼ି ଉଠିଲା, ତାହାର ଦୃଷ୍ଟାନ୍ତସ୍ୱରୂପରେ ସେ ଏକ ଘଟଣା ବର୍ଣ୍ଣନା କଲେ ।

"ସେତେବେଳେ ବିଜ୍ଞାନ ଶ୍ରେଣୀ ସବୁ ନିତାନ୍ତ ଅଧମ ଧରଣରେ ହେଉଥିଲା । ନାହିଁ ଥିଲା ଘର, ନାହିଁ ଥିଲା ଯନ୍ତ୍ରପାତି । କେଣ୍ଟକୀ ବିଶ୍ୱବିଦ୍ୟାଳୟ ଜଣାଇ ଦେଲା ଯେ କାହେ କଲେଜକୁ ବିଶ୍ୱବିଦ୍ୟାଳୟ ସ୍ୱୀକାର କରିବ, ଯଦି ପ୍ରକୃତ ମାପ୍‌ଜୁପ୍‌ରେ ଗୋଟିଏ

ବିଜ୍ଞାନ ମନ୍ଦିର ଗଡ଼ା ହେବ ଏବଂ ସେଥିରେ ଖଞ୍ଜା ହେବ ଜଳଉତ୍ତରଣର ଯନ୍ତ୍ରପାତି । ସମସ୍ତ ଦିଆଗଲା ଆଗାମୀ ବସନ୍ତକାଳ ପର୍ଯ୍ୟନ୍ତ ।

କାନେର ଛାତ୍ରମାନେ, ପାହାଡ଼ୀ ଖୋଲମାନଙ୍କରେ ଥିବା ତାଙ୍କ ବାପାମାନେ, ଖମାରମାନଙ୍କର ଖଚର, କାମରେ ଲଗିଗଲେ । ପାହାଡ଼ସବୁ ଯୋଗାଇଲେ ପଥର ଓ କାଠ ।

କିନ୍ତୁ ଯେତେବେଳେ ବିଶ୍ୱବିଦ୍ୟାଳୟର ପ୍ରତିନିଧିମାନେ ସରଜମିନ ତଦନ୍ତରେ ଆସିଲେ, ସେତେବେଳକୁ ବିଜ୍ଞାନ ମନ୍ଦିରର କାନ୍ଥ, ଦୁଆର, ଝରକାସବୁ ହୋଇ ଯାଇଥିଲେ ମଧ୍ୟ ଛାତ ପଡ଼ିପାରି ନ ଥିଲା । ତାହାରେ ବସନ୍ତ ଆସି ଯାଇଥିଲେ ହେଁ ଏଇ ପାହାଡ଼ୀ ଅଞ୍ଚଳରେ ଶୀତ ଅଳପ ଛାଡ଼ି ନ ଥିଲା । ଗୃହଅଭ୍ୟନ୍ତରେ ପତଳା ବରଫ ପଡ଼ିଥାଏ । ଶିକ୍ଷାବିତ୍‌ମାନେ କଲେଜ ଘର ଦେଖିବାକୁ ଗଲା ବାଟରେ ବାରମ୍ବାର ତାଙ୍କ ଗୋଡ଼ସବୁ ବରଫରେ ଖସିଲା ।

ସେମାନେ ଖୋଲା ବିଜ୍ଞାନ ମନ୍ଦିରର ବାରଣ୍ଡାରେ ଠିଆ ହୋଇ ଗୃହଅଭ୍ୟନ୍ତରକୁ ବିସ୍ମିତ ହୋଇ ଅନାଇଲେ । ଉପରେ ଛାତ ନାହିଁ । କିନ୍ତୁ କାଚ ଝରକା ଓ ଦୁଆର ଅରପଟେ ସ୍ୱାଭମତ କ୍ଲାସ ହେଉଥିବାର ଦେଖାଗଲା । ସେମାନେ ଭିତରକୁ ପଶିଲେ । ଦେଖିଲେ, ଛାତ୍ର ଓ ଶିକ୍ଷକ ବାହାରର କୌଣସି ଘଟଣା ପ୍ରତି ବା ଖୋଲା ଆକାଶ ଓ ପଡ଼ୁଥିବା ବରଫ ପ୍ରତି ଦୃଷ୍ଟି ନ ଦେଇ ନିଜ କାମରେ ପ୍ରକୃତ ମନୋଯୋଗ ସହିତ ଲାଗିଛନ୍ତି । କେବଳ ମୂଲ୍ୟବାନ ଯନ୍ତ୍ରଗୁଡ଼ିକୁ ରକ୍ଷା କରିବା ପାଇଁ ଉପରେ ତମ୍ବୁ ଆକାରରେ ଗୋଟିଏ କମ୍ବଳ ସେଥିରେ ଦିଆହୋଇଛି । ବାକିସବୁ

ହେଲା । ଛାତ୍ର ଓ ଶିକ୍ଷକଙ୍କ ଭୋଟ ଉପରେ ଓ ଧଳା କାଠ ମହାର
ଟେବୁଲ ଉପରେ ଦୁଇ ଇଞ୍ଚର ବରଫ ।

ଶିକ୍ଷାବ୍ରତୀମାନେ ଦେଖିଲେ ଯେ ଯନ୍ତ୍ରଗୁଡ଼ିକ ନୂଆ ଓ
ଉନ୍ନତଧରଣର ଏବଂ ଖୁବ୍ ଚତୁରତାର ସହିତ ବନ୍ଦ ହୋଇଛି ।
ସେମାନେ ଆଶ୍ଚର୍ଯ୍ୟ ହେଲେ । ଖୋଜ୍ ନେବାରୁ ଜଣାପଡ଼ିଲା ଯେ
ଡେଟ୍ରଏଟ୍ ସହରର ପ୍ରସିଦ୍ଧ ବୈଜ୍ଞାନିକ କେଟରିଙ୍ଗ୍ କେବଳ ଯେ
ଯନ୍ତ୍ରଗୁଡ଼ିକ ଯୋଗାଇ ଦେଇଛନ୍ତି ତାହା ନୁହେଁ, ଏହି କଲେଜର
ବିଜ୍ଞାନ-ଶିକ୍ଷା ପାଇଁ ସିଲାବସ୍ ମଧ୍ୟ ତିଆରି କରି ଦେଇଛନ୍ତି । ·

ସେ କିପରି ଏଠିକି ଆସିଲେ ?

ଉତ୍ତର ଅତି ସରଳ । ଶିକ୍ଷକ କହିଲେ, "ଆମେ ତାଙ୍କୁ
ଦରକାର କଲୁ । ସେ ଆସିଲେ । ବୋଧହୁଏ କୌଣସି ବନ୍ଧୁଙ୍କଠାରୁ
କାନେ କଲେଜ ବିଷୟରେ ସେ ଶୁଣିଥିଲେ । ଗମ୍ଭୀର ବିଶ୍ୱାସ
ଥିଲେ, ଏସବୁ ଘଟଣା ବୁଝିବା କଠିନ ହୁଏ ନାହିଁ । ଆମେ
ଯେତେବେଳେ ଯାହା ଦରକାର କରୁ ତାହା ବରାବର
ମିଳିଯାଇଛି ।"

"କିନ୍ତୁ ଉମର ତ ଘର ନାହିଁ ଏ ପର୍ଯ୍ୟନ୍ତ ।" ଗୋଟିଏ ବଡ଼
ପିଲା ଉତ୍ତର ଦେଲା, "ଏଇକ୍ଷଣି ଆକାଶ ଘରର କାମ କରୁଛି ।
ପ୍ରକୃତ ଘର ଠିକ ବେଳରେ ଉଠିଆସିବ ।"

ଶିକ୍ଷାବ୍ରତୀମାନେ ଫେରିଯାଇ 'ଇଗଲବସା'ରେ ମିସେସ୍
ଲଯ୍‌ଡ଼ଙ୍କୁ ଭେଟିଲେ । ସେ କାନେର ସାଧାରଣ ସ୍ତ୍ରୀଲୋକଙ୍କର ଯାହା
ପୋଷାକ, ତାହା ହିଁ ପିନ୍ଧିଥାନ୍ତି । ସେଇ ତାଙ୍କର ଦୈନିକ ବେଶ ।
ଶିକ୍ଷାବ୍ରତୀମାନେ ତାଙ୍କୁ କହିଲେ "ଆମେ ଯାହା ସହଜରେ ବିଶ୍ୱାସ
କରି ହେବନାହିଁ, ତାହା ହିଁ ଦେଖିଲୁ ଓ ଶୁଣିଲୁ ।"

ମିସେସ୍ ଲୟୁଡ୍ କହିଲେ "ତୁମେମାନେ ଟିକିଏ ଅଗରୁ ଆସିଥାନ୍ତ କି ! ସୂର୍ଯ୍ୟୋଦୟ ପୂର୍ବରୁ ଦୁଇଶ ପର୍ଯ୍ୟନ୍ତ ବାଳକ ବାଳିକା ନାନା ଜୋର ଓ ପାହାଡ଼ ଡେଇଁ ଇସ୍କୁଲକୁ ଅସିଲେ । ବରଫ ଜମିଥିବା ସ୍ଥାନମାନଙ୍କରେ ସେମାନଙ୍କୁ ଗୁରୁଣ୍ଡିବାକୁ ହୁଏ । ତାଙ୍କୁ ଇସ୍କୁଲକୁ ଅଣିବାକୁ କୌଣସି ଯାନ ଏଠି ନାହିଁ ।

"ଅନେ ତାଙ୍କୁ କୌଣସି ବିଶ୍ୱବିଦ୍ୟାଳୟକୁ ଯିବାରେ ସାହାଯ୍ୟ କରି ପାରୁ ଏଇ ଆଶାରେ ସେମାନଙ୍କୁ ବନାଯୋଗାରେ ପଚଶ ମାଇଲ୍‌ବାଟ ଗ୍ଳକର ଅସିବାର ମୁଁ ଦେଖିଛୁ । ନୀରବ ହୋଇ ହୁଏତ ପଚଶ ମାଇଲ ପୁଣି ଗ୍ଳଲ ଗ୍ଳଲ ଫେରିଛନ୍ତି । କିନ୍ତୁ ଫେରିଲା ବେଳେ ସେମାନଙ୍କ ଗୋଡ଼ରେ ଯୋତା ଯୋଗାଇ ଦିଆଯାଇଛି, ଯେମିତିକି ସେଇ ବିଜ୍ଞାନ ଘରକୁ ଗ୍ଳତ ଯୋଟେଇ ଧିଆଯିବ ଯଥାସମୟରେ ।"

ସମସ୍ତେ ନିର୍ବାକ ହୋଇ ଠିଆ ରହିଲେ । ଟ୍ରେସ୍ସୀ ଗର୍ବର ସହିତ କହିଲେ, "ବର୍ତ୍ତମାନ ଦକ୍ଷିଣ ଅମେରିକାର ସବୁ କଲେଜରେ ଅମ ପିଲାଙ୍କ ପାଇଁ ଅବାରିତ ଦ୍ୱାର । ଅମର ଫଣ୍ଟ ପାହୁଲାଏ ମଧ୍ୟ ଗଛିତ ଧନ ନାହିଁ । କିନ୍ତୁ ମୋ ବିଗ୍ଳରରେ ସମଗ୍ର ଅମେରିକାରେ ଅମ କଲେଜ କୌଣସି କଲେଜଠାରୁ କମ ବୁଦ୍ଧିବନ୍ତ ନୁହେଁ । ମୁଁ ଏଇ ସେଇ ଖୋଲରେ ଜନ୍ମ ହୋଇଥିଲି । ମୋ ବାପା ତା ନାଁ ଲେଖି ଜାଣି ନ ଥିଲା । କିନ୍ତୁ ସେ ମତେ ଭାନେକୁ ପଠାଇଥିଲା । ଅଜ, ସେଇ ବିଜ୍ଞାନଗୃହର ଗ୍ଳତ ତଆରରେ ସେ ସାହାଯ୍ୟ କରିଥିଲା ।"

---

୫

## — ଜନ୍ମମାଟିର ସେବାହିଁ କଲେଜର ଏକମାତ୍ର ଦରମା —

ଯେଉଁ ଦୁଇଜଣ ପିଲଙ୍କୁ ନେଇ ଡାନେ ହାଇସ୍କୁଲ ଆରମ୍ଭ ହୋଇଥିଲା, ସେହି ଦୁଇଟିକୁ ନେଇ ଡାନେ କଲେଜ ମଧ୍ୟ ଆରମ୍ଭ କରି ହୋଇଥିଲା ୧୯୨୩ରେ । ସେତେବେଳକୁ ଅନେକ ହାଇ-ସ୍କୁଲ ସେ ଅଞ୍ଚଳରେ ଆରମ୍ଭ ହୋଇଗଲାଣି; ପିଲା ପ୍ରାୟ ଶହେଯାଏ ସେସବୁରେ ଭର୍ତ୍ତି ହୋଇ ସାରିଥିଲେ । ଅନ୍ୟ ହାଇସ୍କୁଲ ପରି ପଇସା ଖର୍ଚ୍ଚ କରିବାର ଶକ୍ତି ସେଠି ବିଚାର କରାଯାଏ ନାହିଁ । ଶିଖିପାରିବାର ଶକ୍ତି ଓ ନେତୃତ୍ୱର ସମ୍ଭାବନା ହିଁ ସେଠାର ଏକମାତ୍ର ଦରମା । ଏ ନିୟମର ସେଠି ବାଳପ୍ରମାଣ ବ୍ୟତିକ୍ରମ ହୁଏନାହିଁ ।

ମିସେସ୍ ଲୟଡ୍ କହନ୍ତି—"ବାହାରର ଲୋକେ ବରାବର ମନେ କରନ୍ତି, ଯେଉଁମାନଙ୍କର ଶକ୍ତି ଅଛି ତାଙ୍କଠୁ ଦରମା ଓ ଅନ୍ୟାନ୍ୟ ଫିଜ୍ ନିଅନା କାହିଁକି ? କିନ୍ତୁ ଆମେ, ଏଠି ଡାନେରେ, ଥିଲା ଓ ନ ଥିଲା ଭିତରେ କୌଣସି ଭେଦବିଚାର ରଖୁନା ! ବାପମାନେ ତାଙ୍କ ନିଜ ଇଚ୍ଛାରେ ଶ୍ରଦ୍ଧାରେ କିଛି କିଛି ସାହାଯ୍ୟ କରି ପାରନ୍ତି—ଏବଂ ସେମାନେ ପ୍ରାୟତଃ କରିଥାନ୍ତି; କିନ୍ତୁ ସେଥିପାଇଁ କୌଣସି ବାଧ୍ୟବାଧକତା ନାହିଁ । ଯେଉଁ ଗରିବ ପୁଅ ବା ଝିଅର ବାପ ଖାଲି ବସ୍ତାଏ ଆଳୁ ଦେଇ ପାରିଲା, ଏବଂ ଯାହାର ବାପ ତା'ର ପ୍ରାଚୁର୍ଯ୍ୟରୁ କିଛି ଆମକୁ ସାହାଯ୍ୟ ଦେଲା, ସେମାନେ ଉଭୟେ ଆମ ଆଖିରେ ସମାନ । ଯେ ଯାହା ଦିଏ, ବେଶି ବା କମ ହେଉ, ତାହା ଆମେ ଆଉ ଦାତା ହିଁ ଜାଣୁ । ନ ଥିଲା ଲୋକଙ୍କ ମନରେ ଆଘାତ ହୋଇପାରେ ବୋଲି ସେସବୁ ପ୍ରକାଶ କରି ଯାଏନାହିଁ ।"

ଗରିବର ଦାନ ନେଇ ଡାନେ କଲେଜରେ ଅନେକ ସୁନ୍ଦର ଘଟଣା ଘଟି ଯାଇଛି । ନିମ୍ନରେ ଗୋଟିଏ ଦିଆଗଲା ।

ମନାଲିସା ନାମରେ ଗୋଟିଏ ବାଳିକା ଦିନେ କଲେଜର କର୍ତ୍ତୀ ପାଖକୁ ଗୋଟିଏ କୁକ୍‌କୁଡ଼ୀ ନେଇ ପହଞ୍ଚିଲା । ସେ କହିଲା, "ମୁଁ ବର୍ତ୍ତମାନ କଲେଜରେ ଭର୍ତ୍ତି ହେବି । ମୋର ପଇସା ଦେବାର ଶକ୍ତି ନାହିଁ । ମୋର ଶ୍ରଦ୍ଧାର ଦାନରୂପେ ମୁଁ କଲେଜକୁ ଏଇ କୁକ୍‌କୁଡ଼ୀଟି ଦେଉଛି । ଖାଇବାପାଇଁ ଏ ଅବଶ୍ୟ ବୁଢ଼ୀ ହୋଇଗଲାଣି । କିନ୍ତୁ ଇଏ ଚମତ୍କାର ଅଣ୍ଡା ଦିଏ ।"

କର୍ତ୍ତୀ ମନାଲିସାର ଦାନ ଗ୍ରହଣ କଲେ । ଠିକ୍ ତା ପୂର୍ବର ଦାନ ଥିଲା କେତୋଟି ବୋତଲ ଅଗୁର । ସେ ବହିରେ ଲେଖି-ଦେଲେ "ଫିଜ୍ ବାବଦରେ, ମନାଲିସାଠାରୁ ଗୋଟିଏ ଉତ୍ତମ ଅଣ୍ଡାଦିଅଳୀ କୁକ୍‌କୁଡ଼ୀ ।"

କିନ୍ତୁ ସେତିକି ଲେଖିସାରି କର୍ତ୍ତୀ ମୁହଁ ଉଠାଇ ଅନାଇଲା-ବେଳକୁ ଦେଖିଲେ ଯେ ମନାଲିସାର ଆଖିରୁ ଲହରେ ମୁକ୍ତା ଝରି ପଡ଼ୁଛି । ମନାଲିସା କୁକ୍‌କୁଡ଼ୀଟିକୁ ଟେବୁଲ୍‌ରୁ ଉଠାଇ ନେଇ ତାର ବକ୍ଷରେ ଆଦରରେ ଜାକି ଧରିଲା ଏବଂ ଗୋଳଗଦ୍‌ଗଦ୍ ସ୍ୱରରେ କହିଲା, "ସେ ମୋର ଅତି ଆଦରର ସମ୍ପଦ । ଛୋଟ ଛୁଆଁ ଥିଲାବେଳେ ଯେତେବେଳେ ତାର ଗୋଟେ ଗୋଡ଼ ଭାଙ୍ଗିଗଲା, ବାପା ମତେ ତାକୁ ପାଳିବାକୁ ଦେଇଥିଲେ । ମୁଁ ସେଇଦିନରୁ ତାକୁ ନିଜର କରି ବଢ଼େଇ ଥିଲି ।" ଏତିକି କହି ମନା କ୍ଷିପ୍ରଗତିରେ ଘରୁ ବାହାରିଗଲା ।

କର୍ତ୍ତୀ ତାଙ୍କ ଖାତାକୁ ପୁଣି ଫେରିଲେ ଏବଂ କିଛିକ୍ଷଣ-ପୂର୍ବେ ଯାହା ଲେଖିଥିଲେ ତାକୁ ସଂଶୋଧନ କରି ପୁଣି ଏଇମିତି ଲେଖିଲେ—"ମନାଲିସାଠାରୁ ଫିଜ୍‌ବାବଦରେ ଗୋଟିଏ କୁକ୍‌କୁଡ଼ୀ, ଯାହା ଅମୂଲ୍ୟ ।"

ଅନେକେ ଅଲଣ୍ ଲସୁଡ଼୍‌ଙ୍କୁ ପଚାରନ୍ତି "ତମେ ସରକାରୀ ସାହାଯ୍ୟ ବା ନେଉନା କାହିଁକି ?" ସେ ବଙ୍କିମୟ ଉତ୍ତର ଦିଅନ୍ତି— "ଏଇ ମହାନ୍ ଦେଶରେ ଆମେ କଣ ସବୁ କଥାରେ ଗୃହ୍ୟା ସରକାର ଉପରେ ସବୁ ଦାୟିତ୍ୱ ନିଅନ୍ତୁ ? ଆମେ ଏକା ଏକା କିଛି ଦାୟିତ୍ୱ ବହନ କରି ପାରିବା ନାହିଁ ?"

ସରକାରୀ ସାହାଯ୍ୟ ନ ନେବାର ଆଉ ଏକ କାରଣ ମଧ୍ୟ ଅଛି । କାନେ କଲେଜ ଯେପରି ଭାବରେ ପରିଚାଳିତ ହେଉଛି, ଜଗତରେ ସେପରି ଆଉ ଗୋଟିଏ ଅଛି କି ନାହିଁ ସନ୍ଦେହ । ପରିଚାଳନାରେ ସ୍ୱାଧୀନତାହିଁ କାନେର ଆଦର୍ଶକୁ ସମ୍ଭବ କରିପାରିଛି ।

କାନେ ଅଞ୍ଚଳ ବଡ଼ ଗରିବ । ତେଣୁ ଅଲସ୍ ଲସୁଡ଼୍, ସେ ଅଞ୍ଚଳର ଦରିଦ୍ର ନିବାସୀମାନଙ୍କର ଶ୍ରେଷ୍ଠ ସ୍ଥାନ କୁଟୀରଅଡ଼କୁ ଦୃଷ୍ଟି ଦୃଷ୍ଟି ପକାଇ ଗରିବ କୋଠା ତିଆରି କରାଇବାକୁ କେବେ ହେଲେ ଗୃହୀ ନାହାନ୍ତି । ସେ ଅଞ୍ଚଳର ଲୋକେ କଲେଜଟିକୁ ନିଜର କରିନେଇଛନ୍ତି ଏଇ କାରଣରୁ ଯେ, ସେଠି ଏପରି କିଛି ନାହିଁ ଯାହା ସେଠାର ଦରିଦ୍ର ଲୋକଙ୍କର ବୋଧଶକ୍ତିର ବାହାରେ । କଲେଜ କମ୍ପାଉଣ୍ଡ ଭିତରେ ଯେଉଁ ଶ୍ରେଷ୍ଠ ସ୍ଥାପତ୍ୟ ନିଦର୍ଶନ ଘରସବୁ ତିଆରି ହୋଇଛି, ଯେଉଁଠି ବର୍ତ୍ତମାନ ସ୍ନାତକ ଶିକ୍ଷାର୍ଥୀ ଆଲୁଅ ଛଡ଼ା ଆଉ କୌଣସି ହେଲେ ଆଧୁନିକ ବିଳାସ ନାହିଁ, ସେସବୁ କଲେଜ ଛାତ୍ର ଛାତ୍ରୀଙ୍କର ବାପମାନଙ୍କର ଅଭିଳାଷ ସୀମା ଭିତରେ । ଇଚ୍ଛା କଲେ ସେମାନେ ମଧ୍ୟ ସେଇପରି ଘରସବୁ ବନେଇ ପାରିବେ ଏବଂ ବନାଇଛନ୍ତି ମଧ୍ୟ । କିନ୍ତୁ ପାଠ, ପଢ଼ାପଢ଼ି, ବିଦ୍ୟାଚର୍ଚ୍ଚା, ଆଲୋଚନା ପ୍ରଭୃତିରେ କାନେ କଲେଜ

ସମଗ୍ର ଆମେରିକାର ଯେକୌଣସି ସମାନ୍ତରାଳ ଅନୁଷ୍ଠାନ ସଙ୍ଗେ କାନ୍ଧକୁ କାନ୍ଧ ମିଳାଇ ଠିଆ ହେବାର ଗର୍ବ ପୋଷଣ କରେ । ତାହା ଅଭିମାନୀ ପାହାଡ଼ିଆ ଲୋକଙ୍କୁ ଅତ୍ୟନ୍ତ ଆହ୍ଲାଦ ଓ ସୁସ୍ଥ ଅହଙ୍କାର ଆଣିଦଏ । କିନ୍ତୁ ଆଜି ସବୁଥିରେ କାନେ କଲେଜ ଦରିଦ୍ର ଅନୁନ୍ନତ ପାହାଡ଼ୀ ଲୋକର ଅଭିଜ୍ଞତାର ଭିତରେ । କଲେଜ ହଷ୍ଟେଲମାନଙ୍କରେ ପିଲେ ନିତ୍ୟ ଠିକ୍ ସେଇ ଖାଦ୍ୟ ଖାଆନ୍ତି, ଯାହା କି ସେ ଅଞ୍ଚଳର କୁଟୀରମାନଙ୍କରେ ଅତି ପରିଚିତ । ଘରେ ବାପା, ମା ବା ଅତିଥିମାନେ ମଧ୍ୟ ଯେପରି ଆନନ୍ଦରେ, ଆଗ୍ରହରେ ନାନା ଶ୍ରମ କରିଥାନ୍ତି, କଲେଜରେ ପିଲେ ସେଇପରି କାଠ କାଟିବା ଓ ରାନ୍ଧିବା ପ୍ରଭୃତି ଆନନ୍ଦରେ କରିଥାନ୍ତି ।

କିନ୍ତୁ କାନେ କଲେଜର ସ୍ଥାନୀୟ ଲୋକପ୍ରିୟତାର ପ୍ରଧାନତମ କାରଣ ଆଜି ଏକ ଅନ୍ତୁ । କଲେଜରେ ଭର୍ତ୍ତି ହେଲାମାତ୍ରେ କାନେ କଲେଜର ପ୍ରତି ବାଳକ ଓ ବାଳିକା ଆଲିସ୍ ଲୟଡ୍ଙ୍କ ନିକଟରେ ଏକ ଅ-ଲିଖିତ ପ୍ରତିଜ୍ଞାରେ ଏପରି ଭାବରେ ଏକ ଫିଜ୍ ଦଅନ୍ତି, ଯାହାକି ପୃଥିବୀରେ କୌଣସି ଦେଶରେ କୌଣସି ଅନୁଷ୍ଠାନରେ ଆଦାୟ ହୁଏ ନାହିଁ । ତାହା ହେଉଛି ଏହା ଯେ କାନେର ପ୍ରତି ଛାତ୍ର ଓ ଛାତ୍ରୀ ଶିକ୍ଷା ସମାପନାନ୍ତେ ଫେରି ଆସିବେ ସେଇ ଅନୁନ୍ନତ ପାହାଡ଼ୀ ଅଞ୍ଚଳକୁ—ସେଠି ସୁସ୍ଥ, ଶକ୍ତିମନ୍ତ, ଅକଳୁଷ, ଲୋକୋପକାରୀ ନାଗରିକ ଜୀବନଯାପନ କରିବାକୁ । ଅନ୍ୟ କଥାରେ କାନେର ଛାତ୍ର ଓ ଛାତ୍ରୀ ନିଜ ଲୋକଙ୍କର, ନିଜ ଜନ୍ମମାଟିର ସମୃଦ୍ଧି ପାଇଁ ସମଗ୍ର ଜୀବନଟିକୁ ଏକ ପ୍ରକାର ନ୍ୟସ୍ତ କରିବେ ।

ଏଇ ପ୍ରତିଜ୍ଞା କ'ଣ ପ୍ରକୃତରେ ରକ୍ଷିତ ହେଉଛି ? ଆଲିସ୍ ଲୟଡ୍ ଉତ୍ତର ଦେଇଥିଲେ, "ସପ୍ତାହକ ପୂର୍ବେ ମୁଁ କହୁଥାନ୍ତି ସବୁ

କ୍ଷେତ୍ରରେ ନୁହେଁ । ଜଣେ ଯୁବକକୁ ଆମେ ହରାଇଥିଲୁ ବୋଲି ମନେ ହେଲା । କଲେଜ ଛାଡ଼ିଲା ପରେ ସାତବର୍ଷ ଯାଏଁ ତାଠାରୁ କୌଣସି ଖବର ଆମେ ପାଇ ନଥିଲୁ । ତେଣୁ ମୋ ଅଫିସ୍‌ର କାନ୍ଥରୁ ତାର ଫଟୋଟି ଉଠାଇନେଲି । ଏପରି ଫଟୋ କାଢ଼ିନେବା ଏହା ହେଲା ପ୍ରଥମ ଅଭିଜ୍ଞତା । କିନ୍ତୁ ଠିକ୍ ତା ପରଦିନ ସେ ଘରେ ପଶି ମତେ ଦେଖାକଲା । ଏସିଆର କୌଣସି ଦେଶକୁ ଗୋଟିଏ ମିଲିଟାରୀ ମିସନ୍‌ରେ ସେ ଯାଇଥିଲା । ସେ ଫେରି ଆସିଛି, ବର୍ତ୍ତମାନ ତା ମାଟିରେ ରହିବ ବୋଲି ।”

•

କାନେଟର କିଛୁକାଳ ରହିଲେ ଯାଇ ବୁଝାପଡ଼େ କାନେ ପ୍ରତି ଗ୍ରୁପ୍ ଛାତ୍ରୀଙ୍କର ଆକର୍ଷଣ କାହିଁକି ଏତେ ବେଶି । ମାତ୍ର ଛଅବର୍ଷ ବୟସ ବେଳୁ ପ୍ରାଇମେରୀ ସ୍କୁଲରେହିଁ ସେମାନଙ୍କର ସେବାମନୋବୃତ୍ତିରେ ତାଲିମ ଆରମ୍ଭ ହୋଇଯାଏ । ହାଇସ୍କୁଲ ଓ ଦୁଇ ବର୍ଷର କଲେଜ ଜୀବନ ଦେଇ ତାହା କ୍ରମେ ପ୍ରସାରିତ ଓ ଦୃଢ଼ୀଭୂତ ହୁଏ । କାନେର ଶିକ୍ଷକମାନେ ମଧ୍ୟ ଏହି ସେବାଭାବରେ ଅନୁପ୍ରାଣିତ । ଛାତ୍ର ଛାତ୍ରୀଙ୍କ ସହିତ ସେମାନେ ମଧ୍ୟ ସରଳ, ନିରାଡ଼ମ୍ବର, ଶ୍ରମକୁଶଳ ଜୀବନ ଯାପନ କରନ୍ତି । ବାହାର ଲୋକଙ୍କ ଆଖିରେ କାନେ କଲେଜ ନିପଟ ମଫସଲି, ଅସଭ୍ୟ, ଆଦିମ ବୋଧ ହୋଇପାରେ; କିନ୍ତୁ ତାହାର ଛାତ୍ରଛାତ୍ରୀଙ୍କ ପକ୍ଷରେ ସେ କଲେଜରେ ସ୍ଥାନ ପାଇବା ହିଁ ବହୁ ଶତାବ୍ଦୀ ଆଗକୁ ଯିବା ।

ଗୋଟିଏ ଛାତ୍ର, ଯେ କି ସେତେବେଳେ କାନେ କଲେଜରୁ ବାହାରି କେଣ୍ଟୁକୀ ବିଶ୍ୱବିଦ୍ୟାଳୟରେ ଭର୍ତ୍ତି ହୋଇ ଡାକ୍ତର ହେବାକୁ ଯାଉଥିଲା, ମୁଁ ତାକୁ ପଚାରିଲି ସେ କାହିଁକି ଆଉ ଫେରିବାର ଆଶା ରଖିଛି ? ପିଲାଟା ମତେ ବିସ୍ମିତ ଭାବରେ

ଅନାଇଲି । ସେ ଯେ ଅଲ୍‌ସ୍ ଲପ୍ଟନ୍‌ଙ୍କ ଦୁଇ ବର୍ଷ ତଳେ କଲେଜରେ ଭର୍ତ୍ତି ହେବା ଧନ କଥା ଦେଇଦେଇଛୁ ! ସେଥିରେ ଅଳ ଭ୍ରବବାର, ବଗ୍ଭବବାର କଛୁ ଅଛୁ ନା ! ସେ ନିଶ୍ଚେ ଫେଋବ । ଅନ୍ୟ ପନ୍ଥାର ପ୍ରଶ୍ନ ନାହିଁ ।

କାନେର ଯେ କୌଣସି ଛାତ୍ରୀଙ୍କୁ ତାର ଲକ୍ଷ୍ୟ ପଗ୍ଭର, ସଙ୍ଗେ ସଙ୍ଗେ ଉତ୍ତର ମିଳବ "ଶିକ୍ଷକତା" । ତାହା ପୁଣି ଯେ କୌଣସିଠାରେ ଯେକୌଣସି ପିଲାଙ୍କର ନୁହେଁ, ସେହି ନିଜର ଅନ୍ତଲଣ୍ଠ ପାହାଡ଼ୀ ପିଲାଙ୍କର । ସେମାନେ କେବଳ ଛୋଟ ଶିଶୁଙ୍କୁ ସାକ୍ଷର ବା ଶିକ୍ଷିତ ବନେଇବାର ସ୍ୱପ୍ନ ଦେଖନ୍ତି ନାହିଁ, ସେମାନଙ୍କର ପ୍ରକୃତ ସ୍ୱପ୍ନ ହେଉଛି ଯେ ସେ ଅଞ୍ଚଳର ବାଳକ ବାଳକା, ପ୍ରୌଢ଼ ପ୍ରୌଢ଼ା, ସମସ୍ତଙ୍କୁ ଶିକ୍ଷିତ କରେଇବା ପାଇଁ, ସମସ୍ତଙ୍କୁ ଉପରକୁ ଉଠେଇବା ପାଇଁ ଏବଂ ଏଇ ସ୍ୱପ୍ନ ବସ୍ତୁତଃ ବାସ୍ତବରେ ଅକ୍ଷରେ ଅକ୍ଷରେ ଫଳବନ୍ତ ହୋଇ ଅସୁଛୁ । କାନେର ପ୍ରଥମ ଗ୍ରାଜୁଏଟଠାରୁ ଏ ଯାଏଁ ଯେଉଁ ରେକାର୍ଡ ଅଛୁ ତାହା ମୁଁ ଦେଖିଚ । ଶତକଡ଼ା ଯେଉଁ ଦଶଜଣ କାନେ-ବୃତ୍ତି ପାଇଥାନ୍ତି, ସେମାନେ ତ ବିଶ୍ୱବିଦ୍ୟାଳୟକୁ ଯାଆନ୍ତି । ବାକୀତକ କାନେ ଛାଡ଼ିଲା ପରେ ୪।୫ ବର୍ଷ କୌଣସି କାମ କର ଦରକାର ମୁତାବକ ଟଙ୍କା ବଞ୍ଚେଇ ଗ୍ଭଲନ୍ତି ବିଶ୍ୱବିଦ୍ୟାଳୟକୁ ଏବଂ ସମସ୍ତେ ପୁଣି ଫେରିଆସନ୍ତି ନିଜ ମାଟିକୁ ।

---

## ୭
## — ଡାନେ କଲେଜର ଦୈନନ୍ଦିନ ଜୀବନ —

ଏଇ ଡାନେ କଲେଜ-କେନ୍ଦ୍ରରେ ସେବାନୁପ୍ରାଣିତ ନାଗରିକ-ନେତାସବୁ କପରି ସଂଘ ଭାବରେ ସୃଷ୍ଟି କରି ହେଉଛନ୍ତି, ତାହା ସମସ୍ତଙ୍କର ଜାଣିବାର କଥା ।

ଅଲସ୍ ଲସ୍ଫୁଡ୍ କହନ୍ତି—“ପିଲାଙ୍କୁ ମୂଳରୁ ଏକ ଲକ୍ଷ୍ୟ ବା ଆଦର୍ଶ ଧରାଇ ଦିଅ ଏବଂ ପିଲାଟି ଦିନରୁ ତାଙ୍କୁ ସବୁ କାମରେ ନେତୃତ୍ୱ ନେବାକୁ ଦିଅ । ଏଠି ଆମର ଲକ୍ଷ୍ୟ ପରିଷ୍କାର ଓ ନିଃସନ୍ଦେହ । ତାହା ହେଉଛି, ଆମର ଏଇ ଆପାଲେସିୟ ପାର୍ବତ୍ୟାଞ୍ଚଳରେ ଜୀବନକୁ ଅଧିକ ସମୃଦ୍ଧ କରିବା ଏବଂ ନିଜର ଜନ୍ମମାଟିର ସେବା ଦେଇ ସମଗ୍ର ଦେଶ ଓ ମାନବ ଜାତିର ସେବା କରିବା । ସବୁଠାରୁ ଶ୍ରେଷ୍ଠ ପିଲା ବି ଏଇ ଲକ୍ଷ୍ୟ ଅବଧାରଣ କରି ପାରିବ ।

ଦିନେ ସନ୍ଧ୍ୟାରେ ମୁଁ ଡାନେ ଛାତ୍ରମାନଙ୍କର ଏକ ସଭାରେ ଯୋଗ ଦେଇଥିଲି । ସେଠି କଲେଜର ବଡ଼ ପିଲାଏ ନୂଆ ପିଲାଙ୍କୁ ଡାନେ ଅନୁଷ୍ଠାନର ଏଇ ଲକ୍ଷ୍ୟବାଦ ନେଇ ବୁଝାଉଥିଲେ । ଶିକ୍ଷକମାନେ ନୀରବରେ ଏପାଖେ ସେପାଖେ ବସିଥାନ୍ତି । ଏଠାର ଅନ୍ୟସବୁ କାମ ପରି ଏଇ ସଭା ବି ଛାତ୍ରମାନଙ୍କର କୃତିତ୍ୱର ଏକ ପ୍ରଦର୍ଶନୀ ପରି ହେଲା । ଏଠି ଶିକ୍ଷକର ସ୍ଥାନ କେବଳ ପଥପ୍ରଦର୍ଶକ ଭାବରେ ।

ଜଣକ ପରେ ଜଣେ ପାହାଡ଼ୀ ଯୁଅକ ପ୍ଲାଟଫର୍ମରେ ଠିଆହୋଇ କହିବାକୁ ଆରମ୍ଭ କଲେ । ସେମାନଙ୍କର ବକ୍ତୃତା

ଶୁଣିଲାବେଳେ ମୋର ମନେହେଲା, ମୁଁ ଏକ ପ୍ରାଚୀନ କାଳକୁ ଚାଲିଯାଇଛି । ଏଇ କୃତ୍ରିମତାପୂର୍ଣ୍ଣ ଆଧୁନିକ ଯୁଗରେ ନାହିଁ । ସେମାନଙ୍କ ବାଣୀରେ 'ବିବେକ', 'କର୍ତ୍ତବ୍ୟ', 'ସାହସ', 'ଆଦର୍ଶ ପାଇଁ ଜୀବନକୁ ନ୍ୟାସ', ଲିନକନ, କଲମ୍ବସ, ଜୋନ ଅଫ ଆର୍କ, ବୁକର ଓ୍ୱାସିଙ୍ଗଟନ ପ୍ରଭୃତି ବାରମ୍ବାର ଉଚ୍ଚାରିତ ହେଉଥିଲେ । ଜଣେ ଛାତ୍ର କହିଲା, "ବୁକର ଓ୍ୱାସିଂଟନଙ୍କ ଜୀବନ ପରି ମହତର ଆରମ୍ଭ ଓ ଉତ୍ତମତର ସମାପ୍ତି ଆମେ କଳ୍ପନା କରିପାରୁନାହିଁ । ସେ ଜଗତକୁ ଯେଉଁ ଦାନ ଦେଇ ଯାଇଛନ୍ତି, ସେ ତାହା ଦେଇଛନ୍ତି ତାଙ୍କ ନିଜ ଲୋକଙ୍କ ସେବା ଭିତର ଦେଇ ।"

ବୋଅର ଯୁଦ୍ଧରୁ ଜଣେ ଯୁବକ ଫେରି ଆସିଥିଲା । ସେ ଛାତ୍ରମାନଙ୍କୁ ବୁଝାଇଲା, "ଜୀବନରେ ସ୍ଥିରଲକ୍ଷ୍ୟ ହେବାର ଅର୍ଥ କଅଣ"—ନିଜ ଲକ୍ଷ୍ୟରେ ଦୃଢ଼ବ୍ରତ ଥିବାରୁ ସେ ଯେଉଁ ପ୍ଲାଟୁନ୍‌ର ଦଳାଇ ହୋଇଥିଲା, ଶତ୍ରୁରକ୍ଷିତ ଏକ ସ୍ଥାନ ସେ ପ୍ଲାଟୁନ୍ ହିଁ ଅଧିକାର କରିପାରିଥିଲା । ଅନ୍ୟମାନେ, ଯାହାଙ୍କର ଲକ୍ଷ୍ୟ ଓ ଉତ୍ସାହରେ ଦୃଢ଼ତା ନ ଥିଲା, ସେମାନେ ହଟି ଯାଇଥିଲେ । ସେ ଶେଷରେ କହିଲା, "ଲକ୍ଷ୍ୟ ସ୍ଥିର କର, ଜୀବନରେ ଏକ ବ୍ରତ ଗ୍ରହଣ କର ଏବଂ ତାହା ପାଇଁ ସର୍ବ-ନ୍ୟସ୍ତ ହୁଅ, ଦେଖିବ ସମଗ୍ର ଜଗତ୍ ତୁମକୁ ବାଟ ଛାଡ଼ିଦେବ, ତୁମର ଲକ୍ଷ୍ୟସ୍ଥଳକୁ ପହଞ୍ଚିବା ପାଇଁ ।"

ଏଇ ସଭାର ପରଦିନ ଢାକେରେ କେତେଘଣ୍ଟା ଧରି ବର୍ଷା ହେଲା । ଯେତେବେଳେ ଆକାଶ ସଫା ହେଲା, କଲେଜର ବାସ୍କେଟ୍-ବଲ୍ ପଡ଼ିଆ ଟିର କେତେକାଂଶ ପାଣି ଜମି ହ୍ରଦରେ ପରିଣତ ହୋଇଯାଇଥିବାର ଦେଖାଗଲା । ବାହାରର କେତେକ

ପିଲାଙ୍କୁ ସେଦିନ ସେଠି ଖେଳିବାକୁ ଅନୁମତି ମିଳିଥିଲା । କିନ୍ତୁ ସେମାନେ ପଡ଼ିଆର ଏମିତି ପ୍ଲାବିତ ଅବସ୍ଥା ଦେଖି ନ ଖେଳି ଚାଲିଯିବାକୁ ବସିଥିଲେ । ଏଇ ସମୟରେ ଜଣେ ଶିକ୍ଷକ ସେଠି ଆସି ପହଞ୍ଚିଗଲେ । ସେ ପଚାରିଲେ, “ଘଟଣା କ’ଣ ? ତୁମେମାନେ କାହିଁକି ନ ଖେଳି ?” ତାହାର ପିଲା ଜଣେ କହିଲା, “ସେ ହ୍ରଦକୁ ଦେଖ । ଏମିତି ପଡ଼ିଆରେ ଖେଳନ୍ତୁ ନା କେମିତି ?”

ପାଞ୍ଚମିନିଟ ଭିତରେ ତାଙ୍କ ଶିକ୍ଷକ ତାଙ୍କୁ ଗୋଟିଏ ଟ୍ରକ୍ ଆଣିଥିଲା ଏବଂ ପରର ମିନିଟ୍ ଭିତରେ ସେଇ ପିଲାଙ୍କ ସାହାଯ୍ୟରେ, ପାଣି ଜମିଥିବା ଅଂଶଗୁଡ଼ିକ ପାଣିରେ ପୋତି ପକେଇଲା । ଶୁଖିଲା ପଡ଼ିଆରେ ବର୍ତ୍ତମାନ ଖେଳ ଚାଲିଲା ।

ଏଇ ନାଟକର ଘଟଣା ଦେଖୁଥିବାବେଳେ ମତେ ଜଣେ ତାଙ୍କ ଶିକ୍ଷକ କହିଲେ—“ସ୍ଥିରଲକ୍ଷ୍ୟ ଓ ଲକ୍ଷ୍ୟପଥଗାମୀ ହେବାର ଏଇ ଏକ ବ୍ୟାବହାରିକ ଦୃଷ୍ଟାନ୍ତ ।”

ତାଙ୍କ ପ୍ରାଇମେରୀ ସ୍କୁଲ ପିଲାଙ୍କର ଏକ ଉପାସନା-ମେଳଣରେ ମୁଁ ଦିନେ ସକାଳେ ଯୋଗଦେଇଥିଲି । ତାଙ୍କ ସ୍କୁଲରୁ ବାହାରିଥିବା ବୟସ୍କ ପୁରାତନ ଛାତ୍ରଛାତ୍ରୀ ଏଇ ପ୍ରାଇମେରୀ ସ୍କୁଲ ଚଳାନ୍ତି । ତେଣୁ ଛୋଟ ପ୍ରାଇମେରୀ ଶ୍ରେଣୀର ପିଲାଙ୍କ ମଧ୍ୟ ତାଙ୍କ ଆଦର୍ଶରେ ଛୋଟ ଛୋଟ ନେତା ଭାବରେ ଗଢ଼ିବା ଆରମ୍ଭ ହୋଇଥାଏ । ଏଇ ଦୈନନ୍ଦିନ ଗୋଷ୍ଠୀ ଉପାସନା ଏକାନ୍ତ ଭାବରେ ପିଲାଙ୍କଦ୍ୱାରା ହିଁ ପରିଚାଳିତ ହୋଇଥାଏ । ଗୋଟିଏ ଶ୍ରେଣୀ ଗୋଟିଏ ସପ୍ତାହ ଭାର ନିଏ । ଚଳନ୍ତି ସପ୍ତାହରେ ଦ୍ୱିତୀୟ ଶ୍ରେଣୀ ଉପରେ ଭାର ଥିଲା । ଉପାସନାର କୌଣସି ଅପରିବର୍ତ୍ତନୀୟ

ବାଲା ପଇଟ ନାହିଁ । ଫିଲେ ତାହା ପ୍ରତିଦିନ ପରିବର୍ତ୍ତନ କରିଥାନ୍ତି । ପ୍ରତି ଶ୍ରେଣୀ ଚେଷ୍ଟା କରିଥାନ୍ତି ତାଙ୍କ ପ୍ରୋଗ୍ରାମଟି କିପରି ସବୁଠାରୁ ଉତ୍ତମ ବିବେଚିତ ହେବ । ପ୍ରତିଯୋଗିତା ଅତି ତୀବ୍ର ।

ଅଜିର ସଭାପତି ବେଗୀ ଗିବସନ୍, ବୟସ ସାତବର୍ଷ । ଘରେ ପ୍ରାୟ ଶହେଟି ପିଲା ଜମା ହୋଇଥିଲେ । ଷ୍ଟେଜ ବେଗୀର ମୁଗୁରର ଅଘାତ ଟେବୁଲ ଉପରେ ବାଜିଲାମାତ୍ରେ ସବୁ ଫୁସୁରଫାସର, ଗୁଜୁରଗାଜର ଏକାବେଳେକେ ବନ୍ଦ ହୋଇଗଲା । ସବୁ ବର୍ତ୍ତମାନ ନିସ୍ତବ୍ଧ ।

ଗାନରେ ନେତୃତ୍ୱ ନେବା ଲାଗି ଅଗରୁ ବାଛି ହୋଇଥିବା ଏକ ବାଳିକା ବେଗୀର ଏକ ପାଖେ ଠିଆ ହୋଇ ରହିଥିଲା । ସେ କହିଲା—"ଅମ୍ଭେମାନେ ବର୍ତ୍ତମାନ ଅମର ଜାତୀୟ ସଙ୍ଗୀତ 'ଅମେରିକା' ଗାଇବା ।"

ସମଗ୍ର କେନ୍ଦ୍ରରେ ପିଆନୋ ବା ଅର୍ଗାନ୍ ନାହିଁ । କିନ୍ତୁ ପିଲେ ତାଙ୍କର ସମନ୍ୱୟଯୁକ୍ତ ମିଳିତ କଣ୍ଠରେ ଏକ ସ୍ୱରରେ ଯେତେବେଳେ ଗାଇଲେ "ପ୍ରତି ଗିରି କନ୍ଦରରୁ ବାଜିଉଠୁ ସ୍ୱାଧୀନତା-ଶଙ୍ଖ" ତାହା ସମଗ୍ର କକ୍ଷଟିକୁ ଛାତ ସ୍ଥିତ ପର୍ଯ୍ୟନ୍ତ ଉନ୍ମାଦନାରେ ଭରି ଦେଉଥିବା ସଙ୍ଗେ ସଙ୍ଗେ ମତେ ସ୍ମରଣ କରାଇ ଦେଉଥିଲା, ଅମର ପୂର୍ବ ପୁରୁଷ ସେହି ସାହସୀ କ'-ସହସ୍ର, ଯେଉଁମାନେ ବଫାଲୋ ସହରରେ ଏହି ମହାସଙ୍ଗୀତ ପ୍ରଥମ ଥର ପାଇଁ ବିନା ଯନ୍ତ୍ରସାହାଯ୍ୟରେ ପ୍ରାଣର ଆବେଗରେ କିପରି ଗାଇଥିବେ ।

ତାପରେ ଗୀତ ହେଲା 'ସୁନ୍ଦରୀ ଅମେରିକା' । ପୁଣି ପଠିତ ହେଲା ବାଇବେଲର କେତେକାଂଶ ଓ ପ୍ରଭୁ ପ୍ରାର୍ଥନା । ତାପରେ

ତାଙ୍କ ସ୍କୁଲକୁ କପଡ଼ ଅଧିକ ଭଲ କରାଯିବ, ଏହାର ଖୋଲା ଆଲୋଚନା ପାଇଁ ଗ୍ଲେଟ ବେଶୀ ସଭାକୁ ଡାକଦେଲା । ଅଗଣିତ ହସ୍ତ କପଡ଼କୁ କଠିଗଲା କହିବାର ଅନୁମତି ପାଇଁ । ସମସ୍ତ ପାଣି ନଷ୍ଟ ନ କରିବାଠୁ ଆରମ୍ଭ କରି ରାସ୍ତାରେ ଛିଣ୍ଡା କାଗଜ ବା ମଇଳା ଜିନିଷ ନ ଫୋପାଡ଼ିବା ପର୍ଯ୍ୟନ୍ତ ଅନେକ ସଙ୍କେତ ପ୍ରକାଶିତ ହେଲା । ମୁଁ ଶୁଣିଲି ଯେ ଏପରି କୌଣସି ଦିନ ଯାଏ ନାହିଁ, ଯେଉଁଦିନ ଏଇ ଗ୍ଲେଟ ପିଲେ ଉତ୍ତମ ନାଗରିକତା ବା ମନ୍ଦ ନାଗରିକତା ନେଇ ନିଜ ନିଜ ମତ ପ୍ରକାଶ ନ କରନ୍ତି ।

ନିଜେ ପିଲାଙ୍କଦ୍ୱାରା ନିର୍ଦ୍ଧାରିତ ନିମ୍ନଲିଖିତ ସଂଯମନ କାନେ କଲେଜରେ ଅପରିହାର୍ଯ୍ୟ ଭାବରେ ପରିପାଳିତ ହୋଇଥାଏ ।

ବାଳିକାମାନଙ୍କ ପାଇଁ:—କୌଣସି ଅଳଙ୍କାର ବା ପ୍ରସାଧନ ବ୍ୟବହାର ନିଷିଦ୍ଧ । କୌଣସି ସାମାଜିକ ସୁବିଧା କେହି ଦାବୀ କରିପାରିବେ ନାହିଁ (ଅର୍ଥାତ୍ ଧନୀ ବା ଉଚ୍ଚବଂଶଜାତ ବୋଲି କେହି ଭିନ୍ନ ବ୍ୟବସ୍ଥା ଆଶା କରିବେ ନାହିଁ ।) । ପିତା ବା ଅଭିଭାବକଙ୍କ ସାଥି ଛଡ଼ା କାହାରିକୁ ବାହାରକୁ ଯିବାକୁ ଦିଆଯିବ ନାହିଁ । କଲେଜରେ ପ୍ରଚଳିତ ଧଳା ସୂତାପୋଷାକ ଛଡ଼ା ଅନ୍ୟ ପୋଷାକ ପିନ୍ଧିବେ ନାହିଁ । ରନ୍ଧନରେ, ବାସନମାଜିବାରେ, ଅନ୍ୟାନ୍ୟ ଘରକାମରେ ଅଂଶୀ ହେବେ ।

ବାଳକମାନଙ୍କ ପାଇଁ:—ପିକା ପିଇବା, ନିଶାଦ୍ରବ୍ୟ ଖାଇବା, ବାଜଣା ବଜେଇବା, ନାଚିବା, ତାସ ଖେଳିବା, ଅସଭ୍ୟ ଭାଷାରେ ଶୋଧାଶୋଧି ହେବା, ଅଭଦ୍ର ହେବା, ବାଳିକାମାନଙ୍କ ସହିତ ମିଶିବା, ବନ୍ଧୁକ ବ୍ୟବହାର କରିବା ମନା । ସେମାନେ ନିଜ ନିଜ ବଖରାଟିର ପରିଷ୍କାର ଦାୟିତ୍ୱ ନିଜେ ତୁଲେଇବେ ।

ଅତି ସାଧାରଣ ଧଳା ପୋଷାକରେ ମଧ୍ୟ ଛାତ୍ରୀର ବାଳିକାମାନେ ରମଣୀୟ ଦେଖାଯାନ୍ତି । ମୁହଁଧୋଇପାଇଁ ଗୋଟିଏ ବେସିନ ଏବଂ ଗୋଟିଏ ସ୍ଲେଟ ଅଇନା ଛଡ଼ା ତାଙ୍କର ଅନ୍ୟ ପ୍ରସାଧନ ଉପକରଣ କିଛି ହିଁ ନାହିଁ । ମୁଁ ମିସ୍ ଜୁନ୍‌ଙ୍କୁ ପଚାରିଲି, "ଏଇ ଉପକରଣରେ ଉପର ବାଳିକାମାନେ ଏପରି ଫିଟ୍‌ଫାଟ୍ ହୋଇ ପାରୁଛନ୍ତି କିପରି ?" ସେ କହିଲେ, "ଆମ ଝିଅମାନେ ନ କରି ପାରିବେ ଏପରି କୌଣସି କାମ ନାହିଁ । ସେମାନେ ରାନ୍ଧିବେ, ସିଲେଇ କରିବେ, ଘୋଡ଼ା ଚଢ଼ିବେ, ଗାଈ ଦୁହିଁବେ, ବଗିଚ୍ଚା କାମ କରିବେ, ଗାଇବେ, ନାଚିବେ, ଅଭିନୟ କରିବେ, ଗୋଟିଏ ସଭା ଚଳେଇନେବେ ଏବଂ ଦରକାର ପଡ଼ିଲେ ଧର୍ମୋପଦେଶ ମଧ୍ୟ ଦେବେ ।"

ଝିଅଙ୍କ ପରି ଟୋକାମାନେ ମଧ୍ୟ ଫିଟ୍‌ଫାଟ୍ । ପ୍ରତି ଶ୍ରେଣୀରେ ଜଣେ ନା ଜଣେ ପିଲା ଅଛନ୍ତି, ଯେ କି ଆଗ୍ରହର ସହିତ ଭଣ୍ଡାସ୍ତ୍ରି କାମ କରନ୍ତି । ଫିଟ୍‌ଫାଟ୍ ଭାବରେ ରହିବା ଓ ବାହାରିବା ଏଠାର ଏପରି ଏକ ଧରାବନ୍ଧା କଥା ଯେ, କର୍ତ୍ତୃପକ୍ଷ ସେ ବିଷୟରେ କୌଣସି ବ୍ୟବସ୍ଥା କରି ନାହାନ୍ତି । ପୁଅ ଓ ଝିଅମାନେ ତାର ସମାଧାନ ନିଜେ ନିଜେ କରିନିଅନ୍ତି । ଯେଉଁ ନୂଆ ପିଲା ଅଲଢା ଦେଖାନ୍ତି, ତାଙ୍କୁ ବଡ଼ ପିଲେ ସାହାଯ୍ୟ କରନ୍ତି, ଖୁସିରେ ବତାଇ ଦିଅନ୍ତି । ଛାତ୍ରୀ କେନ୍ଦ୍ରରେ ଦୈନନ୍ଦିନ ଜୀବନ ଆରମ୍ଭ ହୁଏ ସକାଳ ୬ଟା ୪୫ ମିନିଟରେ । ସେତେବେଳେ ଏକ ଘଣ୍ଟା ବାଜେ । ୭-୧୫ରେ ପ୍ରାତଭୋଜନ । କ୍ଲାସ ଆରମ୍ଭ ୮ଟାରେ । କିନ୍ତୁ ତା ପୂର୍ବରୁ ପିଲେ ନିଜ ନିଜ ବିଛଣା ସଜାଉଥିବେ, ଘର ସଫା କରୁଥିବେ, ଘର ସଜାଉଥିବେ । ଗ୍ରୁପ ନେତାମାନେ ଦେଖନ୍ତି ଯେପରି ଏସବୁ ଠିକ୍ ଭାବରେ ହୁଏ ।

ସକାଳେ କିଛି ସମୟ ଉପାସନା ଓ ମଧ୍ୟାହ୍ନଭୋଜନକୁ ଛୁଟି ଦେଇ କ୍ଲାସ ଚଳେ ୩ଟା ୧୫ ପର୍ଯ୍ୟନ୍ତ । ଏହାପରେ ପ୍ରତ୍ୟେକ ପିଲାକୁ କିଛି ଦୈହିକ ଶ୍ରମମୂଳକ କାର୍ଯ୍ୟ କରିବାକୁ ପଡ଼େ — ମଇଳା ନେଇ ଗାତରେ ପୋତିବା, ଜାଳେଣି କାଠ କାଟିବା, କୋଇଲା ବୋହିବା ପ୍ରଭୃତି କେନ୍ଦ୍ରର ଯାବତୀୟ ଦରକାରୀ ଶ୍ରମ । ସନ୍ଧ୍ୟା ୫ଟା ୩୦ରେ ରାତି ଭୋଜନ । ତା ପରେ ଖୋଲା ପଡ଼ିଆରେ ଖେଳ । ୭ଟାରୁ ୯ଟା ଯାଏଁ ପଢ଼ାପଢ଼ି, ନହେଲେ ଛୋଟ ଥିଏଟରରେ ପଦ କିଛି ସଭା, ବକ୍ତୃତା ବା ଅଭିନୟ ଇତ୍ୟାଦି ଥାଏ । ସାଢ଼େ ଦଶଟାରେ ବାଳିକା ଅବା ରାତି ୧୧ଟା ବେଳକୁ ବାଳକମାନଙ୍କ ଘରେ ଆଲୁଅ ଦେଖାଯିବ ନାହିଁ ।

କାନେର ରନ୍ଧାଘର ଜଣେ ଖାଦ୍ୟ-ବିଜ୍ଞାନୀଙ୍କ ତତ୍ତ୍ୱାବଧାନରେ ଥାଏ । ଖାଦ୍ୟ ସେ ଅଞ୍ଚଳରେ ପାହାଡ଼ୀ ଘରମାନଙ୍କରେ ଯେଉଁ ଖାଦ୍ୟ ସେବନ୍ତି; ବାଳିକାମାନେ ରନ୍ଧନର ସବୁ କାମ କରନ୍ତି । ରନ୍ଧା ଦ୍ରବ୍ୟ ଟେବୁଲ୍ ଉପରେ ଥୋଇ ଦିଆଯାଏ । ପିଲେ ଯାହାର ଯାହା ଦରକାର ନେଇଯାଆନ୍ତି । କ୍ଲାସରେ, ରନ୍ଧାଘରେ ଏବଂ ବାହାରେ ସବୁଠି ବାଳକ ଓ ବାଳିକା ଅଲଗା ଅଲଗା ବସା ଉଠା କରନ୍ତି । ଏ ବିଷୟରେ ନିୟମ ଅତି କଡ଼ାକଡ଼ି । ସମାଲୋଚକମାନଙ୍କ ଆଲିଗ୍ ଲୟୁଡ୍‌ଙ୍କ ଗୋଟିଏ ଉତ୍ତର ଯେ କାନେ ଛାତ୍ରମାନେ କାନେର ଛାତ୍ରୀଙ୍କୁ ହିଁ ସାଧାରଣତଃ ବିବାହ କରନ୍ତି ।

ବାଳକମାନେ ଛୋଟ ଛୋଟ ଘରେ ରହନ୍ତି ଏବଂ ତାକୁ ସଫାସୁତୁରା ରଖିବା, ମରାମତି କରିବାର ପୂର୍ଣ୍ଣ ଦାୟିତ୍ୱ ସେମାନଙ୍କର । ଶିକ୍ଷକଙ୍କ ପର୍ଯ୍ୟବେକ୍ଷଣ କେବଳ ଗତର କଥା । ମୁଁ ବାଳକମାନଙ୍କର କେତୋଟି ଆବାସ ଦେଖିଲି । ତାହା ଦେଖି ଯେ କୌଣସି ବଡ଼ା ମିଲିଟାରୀ ସର୍ଜେଣ୍ଟ ମଧ୍ୟ ଗର୍ବ କରିବ — ଏତେ ପରିଷ୍କୃତ, ପରିଚ୍ଛନ୍ନ !

## ୭

## — କାନେରେ ପିଲାଙ୍କୁ କିପରି ନେତୃତ୍ୱ ନେବାରେ ତାଲିମ୍ କରାଯାଏ —

ଦୂରଦୂରାନ୍ତରେ ଯେଉଁ ସଦାଶୟ ଲୋକେ କାନେ ଅନୁଷ୍ଠାନ-ମାନଙ୍କୁ ସାହାଯ୍ୟ କରୁଥିଲେ ବା ଯେଉଁମାନେ ସେମାନଙ୍କର ପ୍ରଶଂସା ଶୁଣିଥିଲେ, ସେମାନେ କାନେର ପାହାଡ଼ିଆ ସ୍କାଉଟ ସ୍କାଉଟୀଙ୍କୁ ସ୍ୱଚକ୍ଷୁରେ ଦେଖିବାକୁ ଇଚ୍ଛା କଲେ । ସେମାନେ ପ୍ରତ୍ୟକ୍ଷ କରିବାକୁ ଚାହିଁଲେ, ଅଲ୍‌ଫ୍ ଲ୍ୟୁଡ୍ ଓ ତାଙ୍କର ସହକର୍ମୀମାନଙ୍କ ହାତରେ ସେଇ ଅନୁନ୍ନତ ପାହାଡ଼ୀ ଅଞ୍ଚଳରେ ନୂତନ ପୃଥିବୀଟି କିପରି ଗଢ଼ି ଉଠୁଛି । ପ୍ରଥମ ଥରରେ ଏହି ଇଚ୍ଛା ପ୍ରକାଶ କରି ବହୁତ ଚିଠିପତ୍ର ଆସିଲା । ତେଣୁ ସ୍ଥିର ହେଲା ଯେ କାନେର ଦଳେ ସ୍କାଉଟ ବାହାର ଜଗତରେ ବୁଲି ଆସିବେ । ସଭ୍ୟଜଗତର ଲୋକେ ତାଙ୍କୁ ଦେଖିବା ସଙ୍ଗେ ସଙ୍ଗେ, ସେମାନେ ମଧ୍ୟ ବର୍ତ୍ତମାନ ଜଗତ ସମ୍ବନ୍ଧରେ ଅନେକ କଥା ଶିଖି ଆସିବେ ।

ଏହା ଭିତରେ ଅନେକ ଦଳ କାନେ ସ୍କାଉଟସ୍କାଉଟୀ ବାହାର ଜଗତ ଦେଖି ଆସିଛନ୍ତି । ବାରରୁ ଅଠର ଯାଏଁ ପିଲାଙ୍କୁ ନେଇ ଗୋଟିଏ ଦଳ କରାଯାଏ । ମିସ୍ କୁନ୍ ବା ସେଇପରି କୌଣସି ଦାୟିତ୍ୱସମ୍ପନ୍ନ ବ୍ୟକ୍ତିଙ୍କ ଅଧୀନରେ ସେମାନେ ବୁଲି ବାହାରନ୍ତି । ଆମେରିକାର ପ୍ରସିଦ୍ଧ ପ୍ରାକୃତିକ ଓ ଐତିହାସିକ ସ୍ଥାନସବୁ ଏବଂ କେତେକ ବଡ଼ ସହର ସେମାନେ ପ୍ରାୟ ବୁଲି ଦେଖନ୍ତି । ଦୁଇଟି ଦଳ ଆମେରିକା ପ୍ରେସିଡେଣ୍ଟଙ୍କ ଅତିଥିରୂପେ ହ୍ୱାଇଟ୍ ହାଉସ୍‌ରେ ମଧ୍ୟ ରହି ଆସିଛନ୍ତି । ଫେରି ଆସିଲା ପରେ ସେମାନେ କାନେର ଅନ୍ୟାନ୍ୟ ସ୍କାଉଟସ୍କାଉଟୀଙ୍କ ପାଖରେ ସମସ୍ତ ବିଷୟ

ପୁଙ୍ଖାନୁପୁଙ୍ଖଭାବରେ ବର୍ଣ୍ଣନା କରିଥାନ୍ତି । ସେମାନେ ବରାବର ଏମିତି ଆଦର ଓ ଆତିଥ୍ୟ ପାଇଥାନ୍ତି ଯେ ଯେଉଁ କେତୋଟି ମୁଦ୍ରା ଧରି ସେମାନେ ଯାତ୍ରାରମ୍ଭ କରିଥାନ୍ତି, ଫେରିଲାବେଳକୁ ତାଙ୍କ ପାଖରେ ସେତିକି ଥାଏ ।

ଏଇସବୁ ଯାତ୍ରାବେଳେ, ଯେତେବେଳେ କାବେର ସ୍କଉସ୍କଉଟୀ ବାହାରର ଲୋକଙ୍କ ସମ୍ପର୍କ ଓ ସଂଘର୍ଷରେ ଆସନ୍ତି, ସେତିକିବେଳେ ସେମାନଙ୍କ ତାଲିମ୍‌ର ବିଶେଷତ୍ୱର ସୁନ୍ଦର ପରୀକ୍ଷା ହୋଇଥାଏ । ଅଲିଭ୍ ଲୟୁଡ୍ ଗୋଟିଏ ଘଟଣା ମନେ ପକାଇ ବରାବର ସୁଖ ଓ ଗୌରବ ଅନୁଭବ କରିଥାନ୍ତି । କନେକ୍‌ଟିକଟ୍‌ରେ ଗୋଟିଏ କ୍ଲବ କାବେର ସ୍କଉଙ୍କୁ ଅତିଥି ରୂପେ ଗ୍ରହଣ କରିଥାଏ । ବୟସ ନିର୍ବି-ଶେଷରେ କାବେର ସ୍କଉ ଓ ସ୍କଉଟୀ ପାଳିକରି ସଭାପତିତ୍ୱ କରିବାର ଭାର ନିଅନ୍ତି । ଯଦ୍ଦ୍ୱାରା ସେମାନଙ୍କର ନେତୃତ୍ୱ, ଦାୟିତ୍ୱ-ଜ୍ଞାନ, ସାହସ, ଅସଂକୋଚ ପ୍ରଭୃତି ଚରିତ୍ରର ଅଙ୍ଗୀଭୂତ ହୋଇଯାଏ । ଏଇଠାରେ ସେଦିନ ବାର୍ବେଲ ମୁର୍‌ର ପାଳି ପଡ଼ିଲା । ତାର ବୟସ ମୋଟେ ବାର ବର୍ଷ । ସେ ସଭାପତି ହୋଇ ସଭାକୁ ଆହ୍ୱାନ କଲା, ଯେ କୌଣସି ପ୍ରଶ୍ନ ପଚାରିବାକୁ ।

ସଭାରେ ଜଣେ ପଚାରିଲା, "ତୁମକୁ ଦଶଲକ୍ଷ ଡଲାର୍ ମିଳିଲେ, ତୁମେ କ'ଣ କରନ୍ତ ?"

ବାର୍ବେଲ ଉତ୍ତର ଦେଲା, "ମୁଁ ଗୋଟିଏ ଖଚର କିଣନ୍ତି ।"

ଲୋକଟି ବିସ୍ମିତ ହୋଇ ପୁଣି ପଚାରିଲା, "ଖଚରଟିଏ କିଣିବ ? ସତରେ ?"

ବାରବର୍ଷର ପିଲା ଦୃଢ଼ଭାବରେ ପୁଣି କହିଲା, "ହଁ, ଗୋଟିଏ ଖଚର । ହଁ, ମୁଁ ସେଇ ଖଚରରେ ପାହାଡ଼ ଉପରକୁ ଉଠିବି ଏବଂ

ବାଟରେ ଯେତେ ସାଙ୍ଗ ବାଳକ ଓ ବାଳିକା ଭେଟିବ, ସମସ୍ତଙ୍କୁ ସେଇ ଖଚର ଉପରେ ବସେଇ ସ୍କୁଲକୁ ନେବ । ପାହାଡ଼ ଚଢ଼ି ସ୍କୁଲକୁ ଯିବାର କଷ୍ଟରୁ ସେମାନଙ୍କୁ ରକ୍ଷା କରିବ ।"

କିଛିକାଳ ପରେ ଜାନେକୁ ଗୋଟିଏ ଚେକ୍ ଆସିଲା ଏବଂ ତା ସାଥିରେ ଛୋଟ ଚିଠିଟିରେ ଲେଖାଥିଲା, "ଆଶାକରେ ଯେ ଡାର୍ଲେଲ୍ ମୂର ଗୋଟିଏ ଉତ୍କୃଷ୍ଟ ଖଚର କିଣିବା ପାଇଁ ଏଇ ଟଙ୍କା ଯଥେଷ୍ଟ ହେବ ।"

ମିସ୍ ଜୁନ୍‌ଙ୍କର ସ୍କୁଲରେ ଆଜ ଏକ ଘଟଣା ଲାଗି ରହିଛି । ତାଙ୍କ ଅଧୀନରେ ଦଳେ ପିଲା ବଫାଲୋ ସହର ଦେଖିବାକୁ ଯାଉଥିଲେ । ତନ୍ମଧ୍ୟ ବୃହତ୍ତମ ହାଇସ୍କୁଲ ଜାନେ ପିଲାଙ୍କୁ ନିମନ୍ତ୍ରଣ କଲା । ସେ ହାଇସ୍କୁଲ ହଲ୍‌ରେ ତିନିହଜାର ଦର୍ଶକଙ୍କର ସ୍ଥାନ ଅଛି ଏବଂ ସେହି ବିରାଟ ପ୍ରେକ୍ଷାଗୃହରେ ଦର୍ଶକ ଭର୍ତ୍ତି ହୋଇ ଯାଉଥିଲେ । ସେଠି କିନ୍ତୁ ଲାଉଡ଼୍ ସ୍ପିକର୍‌ର କୌଣସି ବ୍ୟବସ୍ଥା ନ ଥିଲା ।

ସ୍କୁଲର ହେଡ଼ମାଷ୍ଟରଙ୍କୁ ମିସ୍ ଜୁନ୍ ସେତେବେଳେ ଜଣାଇଲେ ଯେ ଜାନେ ଗ୍ଲବ ଦଳର ସେଦିନର ସଭାପତି ହେବ ଜଣେ ୭ ବର୍ଷ ବୟସ୍କ ବାଳକ । ସେ ଶୁଣି ଅବାକ୍ ଓ ବ୍ୟସ୍ତ ହେଲେ । ସେ କହିଲେ "ଏତେ ଛୋଟ ପିଲାର ସ୍ୱର କାହାକୁ ଶୁଣାଯିବ ନାହିଁ । କେହି ଏ ମିଟିଂରେ ରହିବେ ନାହିଁ; ଆପଣ ବ୍ୟବସ୍ଥା ବଦଳାନ୍ତୁ ।"

ମିସ୍ ଜୁନ୍ କହିଲେ, "ଆଜି ତାର ପାଳି । ଆମେ କୌଣସି-ମତେ ପରିବର୍ତ୍ତନ କରିବୁ ନାହିଁ ।"

ହେଡ଼ମାଷ୍ଟର କହିଲେ, "ତାହା ହେଲେ କୋଡ଼ଏ ମିନିଟ୍ ପରିବର୍ତ୍ତିରେ ମୁଁ କେବଳ ଅପଣମାନଙ୍କୁ ପାଞ୍ଚ ମିନିଟ୍ ସମୟ ଦେଲି।" ଯେତେବେଳେ ଛାନେ ପିଲେ, ଛ-ବର୍ଷିଆ ଦଳପତିର ନେତୃତ୍ୱରେ ଷ୍ଟେଜକୁ ଉଠିଲେ, ହେଡ଼ମାଷ୍ଟର ପକେଟରୁ ଘଣ୍ଟି କାଢ଼ି ତା' ଅଡ଼କୁ ଜାଗ୍ରତ ହୋଇ ଅନାଇ ରହିଲେ।

ଛ'ବର୍ଷିଆ ନେତା କହିବାକୁ ଆରମ୍ଭ କଲାମାତ୍ରେ ସମଗ୍ର ସଭାଗୃହ ନିସ୍ତବ୍ଧ ହୋଇଗଲା। ତା'ର କ୍ଷୀଣ ମୃଦୁ ବାଲକୋଚିତ ସ୍ୱର ବିରାଟ ସଭାଗୃହର ଦୂରତମ କୋଣ ପର୍ଯ୍ୟନ୍ତ ଶୁଣାଗଲା। ଛାନେ ପିଲେ କାହିଁକି ଆସିଛନ୍ତି ସେ ତାହା ପରିଷ୍କାର ଭାଷାରେ କହିବାକୁ ଚଲା। ପାଞ୍ଚ ମିନିଟ ସରିଲା ବେଳକୁ ହେଡ଼ମାଷ୍ଟର ନିଜେ ପିଲାକୁ ଠାରିଲେ ଆଉରି ଆଉରି କହିବାକୁ। ଛାନେର ପିଲା-ନେତା ତାର ଯାହା କହିବାର କଥା କହିସାରି ଛାନେଦଳର ଗୃହିକଣି ବନ୍ଧୁ ଗ୍ଲାନ୍ସଗ୍ଲେର୍ଙ୍କୁ ସଙ୍ଗୀତ ଆରମ୍ଭ କରିବାକୁ ଆଦେଶ ଦେଲା। ସେମାନେ ପାହାଡ଼ୀ ଅଞ୍ଚଳର ଏକ ପଲ୍ଲୀ-ସଙ୍ଗୀତ ଗାଇଲେ। ତାହା ଶେଷ ହେଲା ମାତ୍ରେ, ଉତ୍ତିମାନ ସମଗ୍ର ପ୍ରେକ୍ଷାଗୃହ ଡାକ ଉଠିଲା "ଆଉ ଗାଅ, ଆଉ ଗାଅ।"

ଗୀତ ପରେ, ଜନତାର ଅନୁରୋଧରେ ପୁଣି ଗୀତ ନାଚଭାଜିନଯୁ। ଅଧିବେଶନ ଆରମ୍ଭ ହୋଇଥିଲା ୧୦ଟା ବେଳେ। ହେଡ଼ମାଷ୍ଟର ପାଞ୍ଚମିନିଟ ମାତ୍ର ସମୟ ଦେଇଥିଲେ; କିନ୍ତୁ ଅଧିବେଶନ ଗଲିଲା ମଧ୍ୟାହ୍ନ ବାରଟା ଯାଏଁ। ଛ' ବର୍ଷିଆ ସଭାପତି ନମ୍ରଭାବରେ କହିଲା, "ଆମର ସେଇ ପାହାଡ଼ୀ ଦେଶରେ ଆମେ ୧୨ଟା ବେଳେ ମଧ୍ୟାହ୍ନଭୋଜନ କରୁ। ମୁଁ ଆଶା କରୁଛି, ଏଠି ବି ସେୟା କଲେ ସମସ୍ତେ ଖୁସି ହେବେ।"

କାନଡାର ପିଲେ ଯେପରି ବଡ଼ ଲୋକର ଅତିଥି ହୋଇଥାନ୍ତି, ସେପରି ବଡ଼ ହୋଟେଲରେ ରହନ୍ତି ପରେ ସେମାନେ ତାଙ୍କ ସ୍କୁଲରେ ଯୋଗଦେଇ, ସବୁଠି ନିଜ ଇଚ୍ଛା ପ୍ରଭୃତି ନିଜେ କରିବା, ନିଜ କୋଠା ନିଜେ ସଫା ରଖିବା ପ୍ରଭୃତି କାମଗୁଡ଼ିକ ନିଜେ ନିଜେ କରନ୍ତି ।

ଅପରଥର ତତ୍‌କାଳୀନ ପ୍ରେସିଡେଣ୍ଟ ହୁଭର୍‌ଙ୍କ ସ୍ତ୍ରୀ କାନେଡା ପିଲଙ୍କୁ ହ୍ୱାଇଟ୍ ହାଉସ୍‌କୁ ନିମନ୍ତ୍ରଣ କରିଥିଲେ । କାନେଡା ପିଲେ ହ୍ୱାଇଟ୍ ହାଉସର ସକଳ ବିଳାସୀ ବ୍ୟବସ୍ଥା ଭିତରେ, ସେଠାର ସୁଶ୍ରୀସମ୍ପନ୍ନ ଆଇଭି ଲତାଗୁଡ଼ିକୁ ହିଁ ବେଶି ପସନ୍ଦ କଲେ, କାରଣ କାନେଡାରେ ଆଇଭି ଲତା ନ ଥିଲା । ମିସେସ୍ ହୁଭର୍ କହିଲେ, "ମୁଁ ସେମାନଙ୍କ ଗୁଡ଼ିଏ ଆଇଭି ପଠାଇ ଦେବି ।" ଠିକ୍ ସମୟରେ ଦଶଟି କୁଣ୍ଡରେ ଆଇଭି ଲତା ହ୍ୱାଇଟ୍ ହାଉସ୍‌ରୁ କାନେଡାରେ ଆସି ପହଞ୍ଚିଲା । ଅତି ଯତ୍ନର ସହିତ ପିଲାମାନେ ସେହି ମଧୁର ଆଇଭି ଲତାଗୁଡ଼ିକୁ ବଢ଼େଇ ରଖିଲେ । ଏବେ କାନେଡାର ଗୃହଅଙ୍ଗେ ସୁନ୍ଦର ଆଇଭି ଲତା ମାଡ଼ିଥିବାର ଦେଖାଯାଏ । କିନ୍ତୁ କାନେଡା ପିଲେ ପ୍ରେସିଡେଣ୍ଟଙ୍କ ସ୍ତ୍ରୀଙ୍କୁ ମଧ୍ୟ ପ୍ରତ୍ୟୁପହାର ଦେବାକୁ ଭୁଲି ନଥିଲେ । କାନେଡାରେ ଫର୍‌ସିଥିଆ ନାମକ ପୁଷ୍ପଗଛ ମାତ୍ର ଦୁଇଟି ଥିଲା । ସେଥିରୁ ଗୋଟିଏ ହ୍ୱାଇଟ୍ ହାଉସ୍‌କୁ ପଠାଗଲା । ଏବେ ପ୍ରତି ବସନ୍ତକାଳରେ ହ୍ୱାଇଟ୍ ହାଉସ୍‌ର ହତାଭିତରେ ସ୍ୱର୍ଣ୍ଣ-ବର୍ଣ୍ଣ ଫର୍‌ସିଥିଆ ବହୁ ସ୍ଥାନରେ ପ୍ରଚୁର ଫୁଟିଥିବାର ପ୍ରତିବର୍ଷ ଦେଖାଯାଏ ।

ଆଲମ୍ ଲୁପ୍ତଙ୍କ ଅନୁରୋଧକ୍ରମେ ହାଭାର୍ଡ ବିଶ୍ୱବିଦ୍ୟାଳୟରୁ ଜଣେ ବିଖ୍ୟାତ ବୁଦ୍ଧିପରୀକ୍ଷକ ଥରେ କାନେଡା ଆସିଥିଲେ । କାନେ

ପିଲାଙ୍କ ବୁଦ୍ଧି ପରୀକ୍ଷା ପାଇଁ ସେ ପ୍ରଥମେ ଟେଲିଫୋନ ସମ୍ପର୍କିତ କେତେ ପ୍ରଶ୍ନ ସେମାନଙ୍କୁ ପଚାରିଲେ । ସେତେବେଳେ ତାଙ୍କର କୌଣସି ପିଲା ଟେଲିଫୋନ ଦେଖି ନଥିଲା । ପରୀକ୍ଷକଙ୍କ ପରେ ପରେ ପ୍ରଶ୍ନଗୁଡ଼ିକ ମଧ୍ୟ ସେହି ଧରଣର, ଯାହା ସଭ୍ୟ ମସାଚୁସେଟ୍ସ ଷ୍ଟେଟ୍‌ର ହାଇସ୍କୁଲ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ତାହାସବୁ ଏହି ପାହାଡ଼ୀ ଅଞ୍ଚଳର ପିଲାଙ୍କ ପାଇଁ ଏକାନ୍ତ ଅନୁପଯୁକ୍ତ, କାରଣ ସେ ସବୁର କାହିଁ ଅଞ୍ଚଳର ପ୍ରାକୃତିକ ବା ସାମାଜିକ ପରିବେଶ ସହିତ କୌଣସି ସମ୍ପର୍କ ନଥିଲା । ତାଙ୍କ ପିଲେ ସେମାନଙ୍କର ବହି-ଜ୍ଞାନରୁ ଯେତିକି ପାରିଲେ କହିଲେ, କିନ୍ତୁ ସେମାନେ ମନେ ମନେ ବିରକ୍ତ ହେଲେ ଯେ ପରୀକ୍ଷକ ସେମାନଙ୍କ ପ୍ରତି ନ୍ୟାୟ ବିଚାର କରୁନାହାନ୍ତି । ଯେତେବେଳେ ପରୀକ୍ଷକ ଉଠିବାକୁ ଯାଉଛନ୍ତି ଜଣେ ଛାତ୍ର ପଚାରିଲା, "ମହାଶୟ, ଆମେ କେତୋଟି ପ୍ରଶ୍ନ ଆପଣଙ୍କୁ ପଚାରିବୁ । ଆପଣ କିଛି ମନେ କରିବେ ନାହିଁତ ?"

ପରୀକ୍ଷକ କହିଲେ, "ନା, ନା, ନିଶ୍ଚୟ ପଚାରିବ ।" "ଆଜ୍ଞା, ଆମର ଏ ଅଞ୍ଚଳରେ ଟେଲିଫୋନ ନାହିଁ, କିନ୍ତୁ ଆମ ଏ ଅଞ୍ଚଳରେ ପ-ପ ନାମରେ ଏକ ବୃକ୍ଷ ଅଛି । ଆପଣ ସେହି ବୃକ୍ଷ ସମ୍ବନ୍ଧରେ କିଛି କହି ପାରିବେ କି ?"

ଅତିଥି କହିଲେ, "ମୁଁ ତ ହାରିଲି, ଦେଖୁଛି ।"

"ହ୍ୱାଇଟ୍ ହାଉସ୍ ଗୃହପଟେ ଗୋଟିଏ ବଣିଷ୍ଠ ଅଇଭି ଲତା ମାଡ଼ିଛି । ତାହା ଜଣେ ପ୍ରସିଦ୍ଧ ବ୍ୟକ୍ତି ପ୍ରଥମେ ଲଗାଇଥିଲେ । ଆପଣ ସେହି ପ୍ରସିଦ୍ଧ ବ୍ୟକ୍ତିଙ୍କର ନାମ ଜାଣନ୍ତି କି ?"

ଅତିଥି ମୁଣ୍ଡ ନାଡ଼ିଲେ ।

ଆଉ ଜଣେ ପିଲା କହିଲା "ଗୃଷୀର ଖମାରରେ ଘୋଡ଼ା ନା ଖଚର, କେଉଁ ପ୍ରାଣୀ ଅଧିକ ମୂଲ୍ୟବାନ ?"

ଏଥର ପରୀକ୍ଷପୂର ଚାଷୀ ସ୍ୱରୂପ ବାଞ୍ଜ ଅଡଥି ଦୁଇ ହାତ ଉପରକୁ ଉଠାଇ କହି ଉଠିଲେ, "ମୁଁ ଜାଣୁନାହିଁ, ମୁଁ ବର୍ତ୍ତମାନ ପରାସ୍ତ ।"

ବାଞ୍ଜ ପଣ୍ଡିତ ଆଲ୍‌ସ୍ ଲସୁର୍ଡ଼୍‌କୁ କହିଗଲେ ଯେ ମସାଚ-ସେଟସ୍ ଅଞ୍ଚଳର ଛାତ୍ରମାନଙ୍କ ଅପେକ୍ଷା ଏହି ଦୂରାନ୍ତର ପାହାଡ଼ୀ ଛାତ୍ରଙ୍କର ବୁଦ୍ଧି କୌଣସିମତେ ହୀନ ନୁହେଁ । ବରଂ ସେ ନିଜେ ସେମାନଙ୍କ ନିକଟରେ ପରାଜୟ ସ୍ୱୀକାର କରୁଛନ୍ତି ।

---

## ୮

## — କାନେ କଲେଜର ଫଳ —

ସର୍ବଯୋଗ୍ୟତାସଂପନ୍ନ କାନେ କଲେଜର ଭାଇସ୍-ପ୍ରିନ୍‌ସପଲ୍ ମତେ ଦିନେ କହିଲେ, "ଅନ୍ୟ କଲେଜମାନଙ୍କର ଆଇନକାନୁନ, ଏଠି କାନେ କଲେଜରେ ଚଳେନା । ଆମେ ପ୍ରତିବର୍ଷ ଶୂନ୍ୟ ହସ୍ତରେ ବର୍ଷାରମ୍ଭ କରୁ ଏବଂ ବର୍ଷ ଶେଷବେଳକୁ ଦେଖୁ ଯେ ଆମେ ପୂର୍ବଠାରୁ ଅଧିକ ଦରିଦ୍ର ହୋଇଛୁ । ତଥାପି ଆମେ ବଢ଼ି ଚାଲିଛୁ । ଗତ ଚାଳିଶ ବର୍ଷ ଧରି ଏଇ ଅଭିଜ୍ଞତା ଲାଗି ଆସିଛୁ । ଗତ ମହାଯୁଦ୍ଧ ସମୟରେ ଅନେକ ବଡ଼ ବଡ଼ କଲେଜ ବନ୍ଦ ହୋଇଗଲା; କିନ୍ତୁ ସୁଦ୍ଧା କାନେ ଯେଉଁଠିକି କୌଣସି ଫିଜ ନିଆଯାଏନାହିଁ, ଯେଉଁଠି ସବୁ ପିଲେ ଫ୍ରିରେ ପଢ଼ନ୍ତି ଏବଂ ଯାହାର କୌଣସି ଗଚ୍ଛିତ ସଂପତ୍ତି ନାହିଁ, କୌଣସି ସରକାରୀ ଗ୍ରାଣ୍ଟ ମଧ୍ୟ ନାହିଁ, ସେ ବରାବର ଚାଲୁରହିଲା । ଆମକୁ ଦଶ ଡଲାର୍ ମଧ୍ୟ ଗୋଟାଏ ବଡ଼ ଦାନ । ତଥାପି, ଆପଣ ଏଇ ଦେଖନ୍ତୁ"—

ଏହା କହି ସେ ମତେ ଟାଣି ନେଇଗଲେ ଏବଂ ଗୋଟିଏ ପ୍ରକାଣ୍ଡ ପଥରର ମୂଳଦୁଆ ଦେଖାଇ ଦେଲେ । ପଥରର ମୂଳଦୁଆ ପଡ଼ିଯାଇଛି; କିନ୍ତୁ ଟଙ୍କା ଅଭାବରୁ ଆଉ କାମ ହୋଇପାରିନି । ତା ଉପରେ ଅନାବନା ଗଛ ଓ ଘାସ ଉଠିଗଲାଣି । ସେ କହିଲେ, "ଏ ହେଉଛି ଆମର ଭବିଷ୍ୟତର ବାଳିକା ହଷ୍ଟେଲ । ଏହାକୁ ଶେଷ କରିବା ପାଇଁ ଆମର ତିରିଶ ହଜାର ଡଲାର୍ ଆବଶ୍ୟକ । ଆମେ ସେ ଟଙ୍କା କେବେ ପାଇବୁ ଏବଂ କେଉଁଠୁ ପାଇବୁ ଜାଣୁନା । କିନ୍ତୁ ଆମେ ଏତିକି ଜାଣୁ ଯେ ଆମେ ପାଇବୁ ନିଶ୍ଚୟ । ସେଇ ବିଶ୍ୱାସରେ ଆମେ ଏ ଘର ଆରମ୍ଭ କରିଛୁ ।"

ମୁଁ ତାଙ୍କୁ ପଚାରିଲି, "କାନେର ସର୍ବଶ୍ରେଷ୍ଠ ଦାନ କ'ଣ ଏବଂ ତାହା କିପରି ବା କାହାଠାରୁ ମିଳିଥିଲା ?"

ସେ ଉତ୍ତର ଦେଲେ, "ତାହା ଆମେ ପାଇଛୁ ଗୋଟିଏ ଦୂର ସହରରେ ଭଡ଼ାଘରେ ବାସ କରୁଥିବା ଗୋଟିଏ ଏକାକିନୀ ବିଧବାଠାରୁ । ସେ ପ୍ରତିବର୍ଷ ଗ୍ରୀଷ୍ମମାସ ବେଳକୁ ଏକ ଡଲାର୍ କରି ଅଲିଣ୍ ଲମ୍ବୁଡ଼୍‌ଙ୍କ ପାଖକୁ ପଠାଉଥିଲେ । ମିସେସ୍ ଲମ୍ବୁଡ୍ ପ୍ରତ୍ୟେକ ଶ୍ଳୋଟବଡ଼ ଦାନକୁ ନିଜ ହାତରେ ପ୍ରାପ୍ତି ସ୍ୱୀକାର କରନ୍ତି । ତାହା ବି ଏତେ ବେଶି ହେବାକୁ ଲାଗିଲା ଯେ ଆମେ କେତେକ ପ୍ରସ୍ତାବ କଲୁଁ ଯେ ଆମେ ଦସ୍ତଖତ କରି ଦେଉଁ । ତାର ପ୍ରତିକ୍ରିୟା ହେଲା ଏଇ ଯେ, ମିସେସ୍ ଲମ୍ବୁଡ଼୍ ଦାତାମାନଙ୍କ ନିକଟକୁ ଅଧିକ ଲମ୍ବା ଚିଠି ଲେଖିବାକୁ ଆରମ୍ଭ କଲେ । ଏଇକ୍ରମେ ସେଇ ବିଧବା ସହିତ ତାଙ୍କର ଚିଠି ପତ୍ରରେ ଆଳାପ ଆରମ୍ଭ ହେଲା । ୧୯୫୧ର ଗ୍ରୀଷ୍ମମାସ । ଆମର ନିଅଣ୍ଟ ଏଗାର ହଜାର ଡଲାର୍‌ରେ ଆସି ପହଞ୍ଚି ଥାଏ । ଶିକ୍ଷକମାନଙ୍କ ଅଦଅ-ଦରମା ବାବଦରେ ଏଇ ନିଅଣ୍ଟ ପୂରଣ ହେବାର ଖାତାରେ ଦେଖାଇ ଦିଆ ଯାଉଥାଏ । କାର୍ଲଟନ୍‌ର ଟ୍ରକ୍ ପରି ଶିକ୍ଷକମାନେ ଏଇଭାବରେ ବର୍ଷବର୍ଷ କାନେର ସେବା କରି ଆସିଥାନ୍ତି । ଏଇ ସମୟରେ ବନ୍ଧୁ ପତ୍ର ଭିତରେ ଜଣେ ଓକିଲଙ୍କ ନିକଟରୁ ଏକ ପତ୍ର ଆସିଲା । ଓକିଲ ସେଇ ବିଧବାର ଓକିଲ । ସେ ଜଣାଇଥିଲେ ଯେ ସେଇ ଏକାକିନୀ ବିଧବାଟି ମରିଯାଇଛନ୍ତି ଏବଂ ତାର ଲୁଗାପଟା, ଅଳଙ୍କାର, ଆସବାବ୍, ବାଙ୍କ-ବଣ୍ଡ୍ ସହିତ ସମସ୍ତ ସମ୍ପତ୍ତି କାନେକୁ ଦେଇଯାଇଛନ୍ତି । ତାର ମୂଲ୍ୟ ହେବ ଚବିଶ ହଜାର ଡଲାର୍ ।"

ଉପରଲିଖିତ କାର୍ଲଟନ୍ ଏଗାରଟି ସନ୍ତାନର ପିତା । ତାର ଏକମାତ୍ର ସମ୍ପତ୍ତି ହେଉଛି ଗୋଟିଏ ଟ୍ରକ । ସେଇ ଟ୍ରକ୍‌ରେ

ସେ କାନେ କଲେଜର କାମଗ ବୁଝେ ଓ ବାଟରେ ଯିଏ ଗୃହିଁଲା ତାଙ୍କୁ ନେଇଯାଏ । ଗୋଟିଏ ଶ୍ଲେଟ ଘ୍ରପା କଲ ବସେଇ ସେ କାନେର ଯାହା କିଛି ଘ୍ରପା ହେବାର କଥା, ତାହା ଘ୍ରପି ଦିଏ । କିନ୍ତୁ ସେ କୌଣସି ଦରମା ନିଏ ନାହିଁ । ମୁଁ ତାଙ୍କୁ ଏକଥା ପଚାରିବାରୁ ସେ କହିଲା, "କାନେ ମୋର ପିଲଙ୍କୁ ଶିକ୍ଷା ଦେଉଛି । ମୁଁ ଦରମା ନେବି କାହିଁକି ? ବହୁଦିନ ତଳେ ଜଣେ ବ୍ୟବସାୟୀ ଆଲିସ୍ ଲୟେଡ୍ଙ୍କୁ ବାର୍ଷିକ ତିରିଶ ହଜାର ଡଲାର ଦରମାରେ ଏକ ନୌକରୀ ଯାଚିଥିଲା । ସେ ତାହା ପ୍ରତ୍ୟାଖ୍ୟାନ କରି ଏଠି ବିନା ଦରମାରେ କାମ କରୁଛନ୍ତି; ଆଜି ମୁଁ ମୋ ଟ୍ରକ୍ ପାଇଁ ଭଡ଼ା ନେବି ?"

କାରୁସ୍ଲୋନ୍ ପରି କାନେ ଅଞ୍ଚଳରେ ବର୍ତ୍ତମାନ ଅନେକ ଲୋକ ଦେଖାଯାନ୍ତି, ଯେଉଁମାନେ ଆଲିସ୍ ଲୟେଡ୍ଙ୍କ ସ୍କୁଲ ଓ କଲେଜ ଏ ଭୂଖଣ୍ଡର କି ପରିବର୍ତ୍ତନ ଓ କି ଉନ୍ନତି କରିପାରିଛି ତାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଏମାନେ ତାଙ୍କ ବାପମାଙ୍କଠାରୁ ଏକ ପୁରୁଷରେ ଶହେବର୍ଷ ଆଗକୁ ଚାଲିଯାଇଛନ୍ତି କେବଳ ଆର୍ଥିକ ସମୃଦ୍ଧିରେ ନୁହେଁ, ଶିକ୍ଷା, ସଂସ୍କାର, ଚରିତ୍ର ସବୁଥିରେ । ଏମାନେ ନିଜର ଅର୍ଥ ପିଟିବା ଓ ଟେଣା ଗଜୁରିବାଟାକୁ କେବଳ ନିଜ ସ୍ୱାର୍ଥରେ ଲଗାଇ ନାହାନ୍ତି । ସେମାନେ ନିଜେ ଉଠିବା ସଙ୍ଗେ ସଙ୍ଗେ ବର୍ତ୍ତମାନ ଅନ୍ୟ ପଛୁଆ ପ୍ରତିବେଶୀଙ୍କୁ ନାନା ଭାବରେ ଉଠେଇବାରେ ଲାଗିଛନ୍ତି ।

କାନେ କଲେଜରୁ ବାହାରିଥିବା ଛାତ୍ରଛାତ୍ରୀଙ୍କ ଭିତରେ ବର୍ତ୍ତମାନ ଗଣାଯାନ୍ତି ଦଶ ଜଣ ଡାକ୍ତର, ଦଶ ଜଣ ଓକିଲ, ପନ୍ଦର ଜଣ କଲେଜ ତାଲିମ ଇଞ୍ଜିନିୟର, ଚୃଣ୍ଣ ଜଣ ଧର୍ମଯାଜକ, ସାତ ଜଣ

ନର୍ସ, ଚବିଶଜଣ ସରକାରୀ ଅଫିସର, ଅଠର ଜଣ ଶିକ୍ଷାବିଭାଗୀୟ କର୍ମଚାରୀ, ୧୦୬ ହେଡ଼ମାଷ୍ଟର, ୧୧୨୫ ସ୍କୁଲଶିକ୍ଷକ ଏବଂ ୨୦୨ ଭିନ୍ନ ଭିନ୍ନ କାମରେ ନିଯୁକ୍ତ ଲୋକ, ବିଶେଷତଃ ବ୍ୟବସାୟରେ । ଏ ହେଉଛି ୧୯୫୩ ସାଲର ଶେଷଅଡ଼କାର ହିସାବ । ଏମାନେ ସମସ୍ତେ କାନେର ପାଶ୍-କରା ଛାତ୍ର । କିନ୍ତୁ ଅଣ-ପାସିକ ଛାତ୍ର ପ୍ରାୟ ଅଠଶପାଏଁ ଅଛନ୍ତି ଯେଉଁମାନେ ମଧ୍ୟ କାନେକୁ ନିଜର ବୋଲି ମନେ କରନ୍ତି ।

ଏଇ ଅଣ-ପାସିଆ ଛାତ୍ରଙ୍କ ଭିତରୁ କୋଡ଼ୀ ଜାକବ୍ ଜଣେ । ସେ ଜନ୍ମ ହୋଇଥିଲି ଗୋଟିଏ ଛୋଟ କାଠକୁଡ଼ିଆରେ । ତା ପିଲାଦିନେ ସେ ଦେଖିଥିଲି ଯେ ସେ ଅଞ୍ଚଳରେ ଲୋକେ ହାତ-ବୁଣା ଘରଡ଼ଆର ଲୁଗାଇ ପିନ୍ଧୁଥିଲେ । ଦୋକାନ-ଜିନିଷ କ'ଣ ଲୋକେ ଜାଣି ନ ଥିଲେ ଏବଂ କ୍ଷେତକାମ ପାଇଁ ଯେତେବେଳେ ଘରେ ମିଳୁନଥିଲା, ସେତେବେଳେ ସ୍ତ୍ରୀଲୋକମାନେ କାନ୍ଧରେ ଜୁଆଳି ଦେଇ ଜମି ଚଷୁଥିଲେ । ଏହା ସାଧାରଣ ଘଟଣା ଥିବାରୁ କେହି ଅପମାନିତ ବୋଧ କରୁନଥିଲେ ବା ଅଭିଯୋଗ କରୁନଥିଲେ ।

ଏପରି କାଳ ଓ ଅବସ୍ଥାରେ ଜନ୍ମ ହୋଇଥିବା ସେଇ କୋଡ଼ୀ ଏବେ ତାର କୌଳିକ ଗୃହ ବ୍ୟବସାୟ କରୁଥିଲେ ମଧ୍ୟ ତା ବାପଠାରୁ ଏକା ଧାପକେ ବହୁ ଶତାବ୍ଦୀ ଆଗେଇ ଯାଇଛି ଏବଂ ସେ ତାର ସମସ୍ତ ସଂସ୍କାର ଓ ଅଭ୍ୟୁଦୟ ଲାଗି କାନେ କଲେଜ ନିକଟରେ କୃତଜ୍ଞ । କାନେ କଲେଜ ତାକୁ ପଶୁରୁ ମଣିଷ କରିଛି ।

ତାର ପୂର୍ବପୁରୁଷର ଛୋଟକୁଡ଼ିଆ ସ୍ଥାନରେ କୋଡ଼ୀ ଏବେ ପ୍ରକାଣ୍ଡ ପ୍ରସ୍ତରହର୍ମ୍ୟ ଠିଆ କରେଇଛି । କିନ୍ତୁ ସେଇ ବିରାଟ ଅଟ୍ଟାଳିକାର ବାହାର ଓ ଭିତର ସମସ୍ତ ହିଁ କୋଡ଼ୀ ନିଜହାତରେ

ବନେଇଛନ୍ତି । ଘର ପାଇଁ ଯାହା କାଠ ଦରକାର ହେଲା ଭୋଣ୍ଡୀ ନିଜ ହାତରେ ସେ ସବୁ କାଟିଛନ୍ତି । ତାକୁ ନିଜ ହାତରେ ବୋହି ଗୋଟିଏ ନିକଟବର୍ତ୍ତୀ କରତକଲରେ ଚିରେଇ ଆଣିଛନ୍ତି । ମୂଳଦୁଆ ଓ କାନ୍ଥ ପାଇଁ ଯେତେ ପଥର ଦରକାର, ତାକୁ ପାହାଡ଼ରୁ କାଟି ପୁଣି ଠିକ୍ ମାପ ଓ ପାଲିଶ୍‌ରେ ପକେଇଛନ୍ତି । ସେ ପଥରକୁ ଉଠେଇବା ପାଇଁ ନିଜ ହାତରେ ପୁଲି-ଯନ୍ତ୍ର ତିଆରି କରିଛନ୍ତି । ପଥର ଖୋଳି ୩୫ ଫୁଟ ଗଭୀର କୁଅ ବନେଇ, ସେଥିରେ ହାତ ପମ୍ପ ବସେଇ ତାଙ୍କ ଘରେ ପାଣିକଲର ବ୍ୟବସ୍ଥା କରିଛନ୍ତି । ଏ ପ୍ରକାର ବ୍ୟବସ୍ଥା ଏ ଅଞ୍ଚଳରେ ସର୍ବ ପ୍ରଥମ । ଘର ତଳେ ଗୋଟିଏ ଗଭୀର ଘର ବନେଇଛନ୍ତି ଯେଉଁଠି ତାଙ୍କ ସ୍ତ୍ରୀ ଶତ ଶତ ବୋତଲରେ କୋଳି, ପଣସ, ମାଂସ ସାଇତି ରଖିଥାଏ, ତାଙ୍କ ପିଲାଙ୍କ ପାଇଁ । ଶେଷରେ ତାଙ୍କ ଝିଅମାନଙ୍କୁ କାନେ ହାଇସ୍କୁଲକୁ ପଠାଇ ଭୋଣ୍ଡୀ ପ୍ରକୃତରେ ତାଙ୍କ ପୂର୍ବପୁରୁଷଙ୍କଠାରୁ ଦୁଇଶ ବର୍ଷ ଆଗକୁ ଚାଲି ଆସିଛନ୍ତି । ତାଙ୍କ ଝିଅମାନଙ୍କ ଘରେ ସେ ଲଗାଇ ଦେଇଛନ୍ତି ବିଜୁଳି ଆଲୁଅ ଓ ରଖିଦେଇଛନ୍ତି ଆଲମାରି, ବହି ରଖିବା ପାଇଁ । ସଭ୍ୟ ମାନବର ଏଇସବୁ ଅପରିହାର୍ଯ୍ୟ ସମ୍ପଦର ତିରିଶ ବର୍ଷ ତଳେ କାନେରେ କେହି କଳ୍ପନା କରି ପାରିନଥାନ୍ତେ । ନିକଟରେ ଭୋଣ୍ଡୀ ଗୋଟିଏ ସ୍ଲେଡ଼୍ ଗାଡ଼ିରେ ଟାଣି ଟାଣି ଏ ଅଞ୍ଚଳର ପ୍ରଥମ ରେଫ୍ରିଜରେଟର୍ ବା ଶୀତଳୀକୋଷ ଘରେ ଆଣି ସ୍ଥାପନା କରିଛନ୍ତି ।

ମୁଁ ଭୋଣ୍ଡୀ କୁ ତାଙ୍କ ଭବିଷ୍ୟତ ନେଇ ପଚାରିଲି । ତାଙ୍କ ସାତଟି ପିଲା । ଦୁଇଟି ସେଇଠି ଖେଳୁଥିଲେ । ତାଙ୍କୁ ଦେଖାଇ ସେ କହିଲେ, "ସାତଟିରୁ ଦୁଇଟି ଏଇଠି । ଜଣେ ଯଦି ଡାକ୍ତର ମାର୍ଟିନ୍ ପରି ଓକିଲଟାଏ ବା ଜେନ୍‌କିନ୍ସ ବାର୍କର୍ ପରି ଡାକ୍ତରଟାଏ ହୁଏ, ତେବେ ମନୁଷ୍ୟର ଆଉ ଅଧିକା ଆଶା କରିବାର କି ଦରକାର ?"

ମିସେସ୍ ଲସ୍ବୃଡ୍ କହନ୍ତି, "ଯଦି କାନେ କଲେଜ କେବଳ ଜୋନ୍‌ଥନ୍ ବାର୍କର୍‌କୁ ହିଁ ସୃଷ୍ଟି କରିଥାନ୍ତା, ଅନ୍ୟ କିଛି ନ କରି ମଧ୍ୟ ଅମେ ମୁଣ୍ଡ ଟେକି ଠିଆ ହୋଇଥାନ୍ତୁ ।"

କାନେ ଅଞ୍ଚଳରେ ପ୍ରଥମେ ସ୍କୁଲ ଖୋଲା ହେଲାବେଳେ ଯେଉଁ କେତୋଟି ପିଲା ପ୍ରଥମେ ଆସି ଯୋଗ ଦେଇଥିଲେ ଏବଂ ଯାହାଙ୍କ ଗୋଡ଼ ସେ ପର୍ଯ୍ୟନ୍ତ ଯୋତା ଦେଖିନଥିଲା ଜୋନାଥନ୍ ବାର୍କର ସେଇମାନଙ୍କ ଭିତରୁ ଜଣେ । ଭଲ ପଢ଼ିବା ଯୋଗୁ ସେ କାନେ ଶହରରେ ବରାବର ଉପରକୁ ଉଠି ଉଠି ଡାକ୍ତର ହୋଇ ଫେରି ଏଇ ଅଞ୍ଚଳରେ ହିଁ ବ୍ୟବସାୟ କରୁଛନ୍ତି । ସେ ଦିନରେ ଚାରିଘଣ୍ଟାରୁ ବେଶି ସମୟ ଶୋଇବାକୁ ପାଆନ୍ତିନାହିଁ । ତାଙ୍କର ଦିନ ଆରମ୍ଭ ହୁଏ ରାତି ତିନିଟାରେ ଏବଂ ଶେଷ ହୁଏ ରାତି ଏଗାରଟାରେ । ରୋଗୀଙ୍କୁ ଦେଖା କରିବାରେ ସେ ପ୍ରାୟ ବାର୍ଷିକ ଦଶହଜାର ମାଇଲ ବୁଲନ୍ତି, ଅଥଚ ସେ କାହାକୁ ହେଲେ ଫିସ୍ ବୋଲି କିଛି ମାଗନ୍ତି ନାହିଁ, ଯିଏ ଯାହା ଦେଲା । ମୁଁ ଯେଉଁଦିନ ସକାଳେ ତାଙ୍କୁ ଦେଖା କରିବାକୁ ଯାଇଥିଲି, ସେଦିନ ଗୋଟାଏ ବଖରାରେ ରୋଗୀ ଭର୍ତ୍ତି ହୋଇ ଆଉ ଏକ ବଖରା ପୂର୍ଣ୍ଣ ହେବାକୁ ଯାଉଥିଲା । ସେ ମତେ କହିଲେ, "ମୁଁ ବର୍ତ୍ତମାନ ଖାଲି କୌଣସି ମତେ ଦଣ୍ଡ ଧରି ଠିଆହୋଇଛି । ଅଜସ୍ର ଡାକ୍ତର, ନର୍ସ ପ୍ରସ୍ତୁତ ହେଉଛନ୍ତି । କାନେ କଲେଜ ତା ଦେଖୁଛି ।" ମୁଁ ପଚାରିଲି, "ଆପଣ କ'ଣ ମନେ କରୁଛନ୍ତି, ଆପଣଙ୍କର ପ୍ରଧାନ ସମସ୍ୟା ?" ଟିକିଏ ଭାବି ସେ ଉତ୍ତର ଦେଲେ "ମୁଁ ପାଠ ନ ପଢ଼ିଥିଲେ ମୋର ସମସ୍ୟା ଯାହା ହୋଇଥାନ୍ତା, ଏଠାର ସମସ୍ୟା ପ୍ରକୃତରେ ସେୟା । ସେ ହେଉଛି ମୂର୍ଖତାର ସମସ୍ୟା । ଯାହା ଘଟିଛି, ତାହା ଦୈବପ୍ରେରିତ; ତାହାର ପରିବର୍ତ୍ତନ ଅସମ୍ଭବ—ଏଇ ବିଶ୍ୱାସ । ଦୁର୍ବିପାକ ସବୁକୁ ଜବର୍

କରିବାର ଚେଷ୍ଟା ନ କରି ମାନିନେବାର ଭାଗ୍ୟବାଦୀ ଦୁର୍ବଳତା । ମୋର ସୁବିଧା ଏଇ ଯେ, ମୁଁ ସେଇମାନଙ୍କ ଭିତରୁ ଜଣେ । ତେଣୁ ସେମାନେ ମତେ ବିଶ୍ୱାସ କରନ୍ତି ।”

ଡାନ୍ ମାର୍ଟିନ୍ ବର୍ତ୍ତମାନ ସମଗ୍ର ନର୍ଥ୍ ଜିଲ୍ଲାର ସର୍ବଶ୍ରେଷ୍ଠ ଓକିଲ । କିନ୍ତୁ ଦିନେ ଦାରିଦ୍ର୍ୟବଶତଃ ତା ମା ତାକୁ ଅନ୍ୟ ଜଣଙ୍କୁ ବିକିଦେବାକୁ ଯାଉଥିଲା । ସେଇ କ୍ରୟ-ବିକ୍ରୟର ଦଲିଲ ଏ ପର୍ଯ୍ୟନ୍ତ ଅଛି । ଅଲିସ୍ ଲୟ୍‌ଡ୍ ତାକୁ ଛଡ଼ାଇ ଆଣି ପାଖରେ ରଖିଲେ । ଡାନ୍ ପ୍ରଥମେ କୁକୁଡ଼ାଙ୍କୁ ଦେଖିବାରେ, କାଳଣୀକାଠ ସଂଗ୍ରହ କରିବାରେ ଓ ଅନ୍ୟାନ୍ୟ ଗୃହ-ଭୃତ୍ୟର ସବୁ କାମ କରିବାରେ ନିଯୁକ୍ତ ହୋଇଥିଲା । ଏଇ କାଳେ କଲେଜ ଗଢ଼ାହେଲା ବେଳେ ସେ ମଜୁରିଆ ଭାବରେ କାମ କରି ତାର ପ୍ରଥମ ରୋଜଗାର ନିଜ ହାତରେ ଦେଖି ବେ ଖୁସି ହୋଇଥିଲା । ଏବେ ସେ ସେଇ କଲେଜର ମାନେଜିଂ କମିଟିର ମେମ୍ବର । ଡାନ୍ ତାର ପିଲାଦିନର କଥା ସବୁ ବହୁତ କହେ । ଥରେ ଜଣେ ଡାକ୍ତର ଆଣା ହେଲେ କାଳେ ସ୍କୁଲର ପିଲାଙ୍କୁ ପରୀକ୍ଷା କରିବା ପାଇଁ । ସେତେବେଳେ ସେ ଅଞ୍ଚଳରେ ଲୋକେ ଜୋତା ପିନ୍ଧୁ ନ ଥିଲେ । ଡାକ୍ତର ପିଲାଙ୍କୁ ପରୀକ୍ଷା କରି ଦେଖିଲେ ଯେ ପ୍ରାୟ ପ୍ରତ୍ୟେକଟି ହୁକ୍-ଓ୍ୱାର୍ମ୍ ବା ଅଁକୁଡ଼ା କୃମି ଭର୍ତ୍ତି ହୋଇଛନ୍ତି । ଏ କୃମି ଲୋକଙ୍କ ପାଦ ଦେଇ ଅନ୍ତରେ ପ୍ରବେଶ କରେ । ସେଇଦିନଠୁ ମିସେସ୍ ଲୟ୍‌ଡ୍‌ଙ୍କ ଆଦେଶରେ ସମସ୍ତେ ଜୋତା ପିନ୍ଧିବାକୁ ବାଧ୍ୟ ହେଲେ । ଡାନ୍ କହେ, “ଆମ ପିଲାଦିନେ ଅନ୍ୟ ଟିମ୍ ସାଥିରେ ଖେଳିବା ପାଇଁ ଅଠର କୋଡ଼ଏ ମାଇଲ ପାହାଡ଼ ପର୍ବତ ଉପରେ ଚାଲିବାକୁ ଆମେ କିଛି ହିଁ ମନେ କରୁ ନ ଥିଲୁ ; ଖେଳ ପୁଣି ୧୮।୨୦ ମାଇଲ ଚାଲି ଆସୁଥିଲୁ ।” ଏବେ ପ୍ରାୟ ଶହେ ବର୍ଗମାଇଲ ଅଞ୍ଚଳରେ

ଡାନ୍ ମାର୍ଟିନ ସର୍ବଶ୍ରେଷ୍ଠ ଓକିଲ ବୋଲି ଧରାଯାଏ ଏବଂ ଶୁଣାଯାଏ ଯେ ସେ ଏ ଅଞ୍ଚଳର ପ୍ରାୟ ଊଣେଇଶ ହଜାର ଲୋକଙ୍କ ନାଁ ଜାଣେ । ବ୍ୟବସାୟରୁ ପ୍ରଚୁର ଅର୍ଥ ଗଣ୍ଡି ଏବେ ଡାନ୍ ରାଜନୀତିରେ ପଶିଛି; ଲୋକସଭାର ମେମ୍ବର ହୋଇଛି, ଲୋକଙ୍କର ଉପକାର ପାଇଁ । ତାର ରୋଜଗାରରେ ଝଡର ପ୍ରଶ୍ନ ଉଠେଇଲେ ସେ କହେ, "ମୁଁ ଧନୀ ହେବି ବୋଲି ତ କାନେ ମଠେ ପାଠ ପଢ଼େଇ ନ ଥିଲି ।"

ଡାନ୍ ମାର୍ଟିନ୍ ବିଶ୍ୱାସ କରେ ଯେ ଲୋକମଙ୍ଗଳକାରୀ ସରକାରର ଅଦ୍ୟ କର୍ତ୍ତବ୍ୟ ହେଉଛି ଉତ୍ତମ ରାସ୍ତା ଓ ଉତ୍ତମ ସ୍କୁଲ ନିର୍ମାଣ । ଏ ଦୁଇଟି ଯୁଆଡ଼େ ଯିବେ, ଉନ୍ନତି ଓ ଅଭ୍ୟୁଦୟ ତା ପଛେ ପଛେ ଯିବ । କାନେ ଅଞ୍ଚଳରେ ବର୍ତ୍ତମାନ ସେଇଆ ଘଟୁଛି ।

## ୯

# — ଆମର ଶିଖିବାର କଥା —

ଉଇଲିୟମ୍ ୱଟନ୍ ତାଙ୍କର 'ସ୍ୱଦେଶୀ ବିଦ୍ୟାଳୟ' ପୁସ୍ତକରେ ମିସେସ୍ ଅଲଗ୍ ଲସ୍ୱୁଡ୍‌ଙ୍କ ସ୍ଥାପିତ ଓ ପରିଚାଳିତ ଭାଟେନ ଗୋଷ୍ଠୀଯୋଜନା କେନ୍ଦ୍ରର ଯେଉଁ ବର୍ଣ୍ଣନା ଦେଇଛନ୍ତି, ସେଥିରୁ ଆମ ଦେଶର ଲୋକଙ୍କର ଯେତିକି ବୋଧ ହେବ ବା ଯେତିକି ଆମର ଜାଣିବାର କଥା ତାହା ପୂର୍ବବର୍ତ୍ତୀ ଆଠଟି ଅଧ୍ୟାୟରେ ଏ ସମ୍ପର୍କରେ ଏ ହେଉଛି ଶେଷ ଅଧ୍ୟାୟ ।

ବର୍ତ୍ତମାନ ଆମର ଆଲୋଚନା କରିବାର କଥା, ଆମର ଏହି ମାର୍କିନଦେଶୀୟ ପରୀକ୍ଷା ଓ ଯୋଜନାରୁ କିଛି କ'ଣ ଗ୍ରହଣ କରିବାର ବା ଶିଖିବାର ଅଛି ? କାରଣ, ଯେଉଁଥିରୁ ଆମର ଶିଖିବାର କିଛି ନାହିଁ, ତାହାର ଆଲୋଚନା କରି ଲାଭ କଣ ? କେବଳ 'ସମାଜ' କାଗଜର ସ୍ତମ୍ଭ ପୂର୍ଣ୍ଣ କରିବା ପାଇଁ ମୁଁ ମଧ୍ୟ ଉଇଲିୟମ୍ ୱଟନ୍‌ଙ୍କ ବହିର ପ୍ରଚାରରେ ମାତି ନ ଥାନ୍ତି । ଏ ବହିରେ ଯେଉଁ ଶିକ୍ଷାର ଯୋଜନା ଓ ପରୀକ୍ଷାର ବର୍ଣ୍ଣନା ଦେଖିବାକୁ ପାଇଲି, ତାହା ଏକାନ୍ତ ଭାବରେ ଆମଦେଶ ଓ ଆମ ସ୍କୁଲ କଲେଜ ପାଇଁ ମଧ୍ୟ ପ୍ରଯୁଜ୍ୟ ଓ ପ୍ରୟୋଜିତ ହେବା ଉଚିତ । ଆମର ଶିକ୍ଷାନୁଷ୍ଠାନମାନ ଓ ଶିକ୍ଷାବିଭାଗର ଏଥିରୁ ଅନେକ କଥା ଶିଖିବାର ଅଛି ବୋଲି ଗଭୀର ହୃଦବୋଧ ହେବାରୁ ହିଁ, ମୁଁ ଦେଶ ଆଗରେ ତାହାର ପ୍ରଚାର କରିଛି । ଜଣେ ଶିକ୍ଷାବିତ୍ ଭାବରେ ଏହା ମୋର କର୍ତ୍ତବ୍ୟ ବୋଲି ମନେ ହେଲା ।

ବର୍ତ୍ତମାନ ଅଲଗ୍ ଲସ୍ୱୁଡ୍‌ଙ୍କ ପରୀକ୍ଷା, ସାଧନା ଓ ସିଦ୍ଧି ଉପରକୁ ଦୃଷ୍ଟି ଦିଆଯାଉ । ଚାଳିଶ ବର୍ଷ ତଳେ ଏହି ମାର୍କିନ୍

ମହୁଲା ସ୍ୱାସ୍ଥ୍ୟ ପାଇଁ ଅନେକବାର ଗୋଟିଏ ଜାଗାକୁ ଯାଉଥିଲେ, ସେଠାରେ ସେ ଦେଖିଲେ ଯେ ଅଧିବାସୀମାନେ ଅନେକବାରେ ଥାଇ ମଧ୍ୟ ଏତେ ଅନୁନ୍ନତ ଯେ ସେମାନେ ବାହାରର ଯେକୌଣସି ଅନେକଜଣଙ୍କୁ 'ବିଦେଶୀ' ବୋଲି ଧରନ୍ତି । ସେମାନେ ସମସ୍ତେ ନିରକ୍ଷର, ସେମାନେ ଯୋତା ପିନ୍ଧି ଜାଣି ନ ଥିଲେ, ତାଙ୍କ ଘର ଆମ ଦେଶର ଗୁହାଳଠାରୁ ଭିନ୍ନ ନ ଥିଲା, ସ୍ୱେଚ୍ଛ ମଦ ବାଙ୍କିବା ଓ ଖାଇବା ଥିଲା ସାବଜନୀନ ବ୍ୟବସ୍ଥା ଏବଂ ଠିକଣ କଥାରେ ସେମାନେ ନଷ୍ଟନସ୍ତ ହୋଇ ମରୁଥିଲେ । ଏ ଠିକ୍ ଆମର କୋରାପୁଟ ବା ଗଞ୍ଜାମର ଅଭ୍ୟନ୍ତରୀଣ ଅଞ୍ଚଳର କଥା ମନେ ପକାଇ ଦିଏ । ଏ ଅବସ୍ଥା ଦେଖି ଆଲିସ୍ ଲୟ୍ଡ଼୍ ପ୍ରତିଜ୍ଞା କଲେ ଯେ ସେ ସେଇ ଅଞ୍ଚଳକୁ ସଭ୍ୟ-ଶିକ୍ଷିତ କରାଇବେ । ସେ ଥିଲେ ଦରିଦ୍ରା, ସେ ଥିଲେ ରୁଗ୍ଣା । କିନ୍ତୁ ଏଇ ରୁଗ୍ଣା, ଦରିଦ୍ରା ମହିଳାର ସାହସ, ଧୈର୍ଯ୍ୟ, ମାନବିକତା ଓ ଯୋଜନା ଫଳରେ ଗତ ସ୍ୱଳ୍ପ ବର୍ଷ ଭିତରେ କେବଳ ଗୋଟିଏ ଦୁଇଟି ଲୋକ ବା ପରିବାର ଯେ ସଭ୍ୟ-ଶିକ୍ଷିତ ହୋଇ ପାରିଛନ୍ତି ତାହାନୁହେଁ, ରୂପାନ୍ତର ଘଟିଛି ଗୋଟିଏ ସମଗ୍ର ଜିଲ୍ଲାର, ଗୋଟିଏ ସମଗ୍ର ଅଞ୍ଚଳର ଏବଂ ଏଇ ବିରାଟ ପରିବର୍ତ୍ତନର ମୂଳପତ୍ତନ ହେଲା ସେଇଦିନ,—ଯେଉଁଦିନ ତାଙ୍କ ନେ କୋଠର ଦରଭଙ୍ଗା ଗୃହଶାଳୀଟି ଉପରେ ଗୋଟିଏ ନୂତନ ଧରଣର ପ୍ରାଇମେରୀ ସ୍କୁଲ ଠିଆ କରାଗଲା । ସେଇ ପ୍ରାଇମେରୀ ସ୍କୁଲ କ୍ରମେ ହୋଇଛି ହାଇସ୍କୁଲ ଓ ହାଇସ୍କୁଲ ହୋଇଛି କଲେଜ ଏବଂ ଏଇ ସ୍କୁଲ ଓ କଲେଜର ଆଲୋକହିଁ ସେ ସମଗ୍ର ଅଞ୍ଚଳକୁ ଆଲୋକିତ କରିଛି । ଏଇ ଅନୁଷ୍ଠାନ ବର୍ଷ ପରେ ବର୍ଷ ସୃଷ୍ଟି କରିଛି ସେ ଅଞ୍ଚଳର ନାନାସ୍ଥାନରେ ନୂଆ ନୂଆ ପ୍ରାଇମେରୀ ଓ ହାଇସ୍କୁଲ । କିନ୍ତୁ ସବୁକ୍ଷେତ୍ରର ସେଇ ଆଦିମାତା ମିସେସ୍

ଲୟୁଡ଼୍ଙ୍କ ଆଦର୍ଶରେ ଅନୁପ୍ରାଣିତ ଏବଂ ସମସ୍ତଙ୍କ ସାମୂହିକ ଚେଷ୍ଟା ଫଳରେ ଯେଉଁ ଲୋକେ ଛକ ପକେଇ ଦସ୍ତଖତ ଦେଉଥିଲେ, ସେଇ ମାଟିରୁହିଁ ବାହାରିଛନ୍ତି ନିପୁଣ ଶିକ୍ଷକ, ଡାକ୍ତର, ଓକିଲ ଓ ଇଞ୍ଜିନିଅର ଦଳ । ପୁଣି ଅଲଣ୍ ଲୟୁଡ଼୍ଙ୍କ ସ୍କୁଲ ସବୁ, ପିଲାଙ୍କୁ କେବଳ ଖଣ୍ଡେ ଖଣ୍ଡେ ସାର୍ଟିଫିକେଟ ଦେବାପାଇଁ ଠିଆ ହୋଇ ନାହାନ୍ତି, ସେମାନଙ୍କର ଶିକ୍ଷା ଓ ଆଦର୍ଶ ସମଗ୍ର ପାରିପାର୍ଶ୍ୱିକ ସମାଜକୁ ଗଭୀର ଭାବରେ ପ୍ରଭାବିତ କରିଛି । ଫଳରେ ଲୋକେ ସ୍କୁଲଘର ପରି ଘର ତିଆରି କରୁଛନ୍ତି ଏବଂ ବେଶ, ଭୂଷା, କଥୋପକଥନ ଓ ଚାଲିଚଳନରେ ମଧ୍ୟ ସଭ୍ୟ ସମାଜର ଲୋକ ପରି ବ୍ୟବହାର କରିବାର ଶିଖିଛନ୍ତି । ଗୁଳଣ ବର୍ଷ ଭିତରେ ମାତ୍ର ଗୋଟିଏ ଲୋକର ଚେଷ୍ଟାରେ ଗୋଟିଏ ବିରାଟ ସମଗ୍ର ଅଞ୍ଚଳର ରୂପାନ୍ତର ଘଟିଛି ଏବଂ ତାହା ହୋଇଛି ଶିକ୍ଷାନୁଷ୍ଠାନ ମାଧ୍ୟମରେ । ତେଣୁ ଆମର ଯେ ଏଥିରୁ ଅନେକ କିଛି ଶିକ୍ଷା କରିବାର ଅଛି ସେଥିପାଇଁ ତର୍କର ଆବଶ୍ୟକ ନାହିଁ ।

ଡଟନ୍ଙ୍କ ପୁସ୍ତକରେ ଅଲଣ୍ ଲୟୁଡ଼୍ଙ୍କ କାନେ ସ୍କୁଲ ଓ କାନେ କଲେଜରେ ଯେପରି ବର୍ଣ୍ଣନା ହୋଇଛି, (ଯାହାକି ମୁଁ ପୂର୍ବବର୍ତ୍ତୀ ଅଠଟି ପ୍ରବନ୍ଧରେ ପାଠକ ପାଠିକାଙ୍କୁ ଶୁଣାଇ ସାରିଛି) ସେଥିରୁ ନିମ୍ନଲିଖିତ କେତୋଟି ବିଷୟ ଆମର ଶିକ୍ଷାବିଭାଗ ଓ ଶିକ୍ଷାନୁଷ୍ଠାନ ସମ୍ପର୍କୀୟ ସମସ୍ତଙ୍କର ପ୍ରଣିଧାନର ବିଷୟ ବୋଲି ମୁଁ ମନେ କରେ । ମୋର ଦୃଢ଼ ବିଶ୍ୱାସ ସେ ସବୁ ଆମ ଶିକ୍ଷାପଦ୍ଧତି ଓ ଶିକ୍ଷାନୁଷ୍ଠାନମାନଙ୍କରେ ଯେ ପର୍ଯ୍ୟନ୍ତ ପ୍ରବର୍ତ୍ତିତ କରା ନ ହୋଇଛି, ସେ ପର୍ଯ୍ୟନ୍ତ ଆମର ସ୍କୁଲ କଲେଜମାନଙ୍କଠାରୁ ଦେଶ ଓ ଜାତି ଯାହା ଆଶା କରେ ତାହା ସେମାନେ ତ ଦେଇ ପାରିବେ ନାହିଁ, ବରଂ ତାର ଯଥେଷ୍ଟ ବିପରୀତ ଫଳ ପ୍ରସବ କରି

ସମଗ୍ର ଛାତ୍ରର ଦେହ ଓ ମନକୁ ସେମାନେ ଦୂଷିତ କରୁଥିବେ, ଯେପରି ଏବେ କରୁଛନ୍ତି । ସେଇ କେତୋଟି ବିଗ୍ଭରଣୀୟ ବିଷୟ ବର୍ତ୍ତମାନ ଆଲୋଚନା କରାଯାଉ ।

ପ୍ରଥମରେ ଦେଖିବାର କଥା ଏଇ ଯେ ଅଲଗ୍ ଲୟୁଡ୍‌ଙ୍କ ସ୍କୁଲ ବା କଲେଜ ଆମ ଦେଶର ବିଦ୍ୟାଳୟମାନଙ୍କ ପରି ପାରିପାର୍ଶ୍ୱିକ ସମାଜ ସହିତ ଅସମ୍ପୃକ୍ତ, ଅଙ୍ଗବନ୍ଧ ବା ଅଙ୍ଗଲଗ୍ନ ନୁହନ୍ତି । ସେଗୁଡ଼ିକ ସେଠା ସ୍ଥାନୀୟ ସମାଜ ଓ ଅଞ୍ଚଳ ସଙ୍ଗେ ଓତପ୍ରୋତ ଭାବରେ ଜଡ଼ିତ ଓ ସମସୂତ୍ରରେ ଗ୍ରଥିତ । ଅଲଗ୍ ଲୟୁଡ୍‌ଙ୍କ ସ୍କୁଲ ଆଜ ଛାତ୍ରାବାସ କାନେର ଦରିଦ୍ର ଅଧିବାସୀଙ୍କ ଘରଠାରୁ କେବଳ ଏତିକି ମାତ୍ର ଭିନ୍ନ ଯେ ସେସବୁରେ ନୂଆ କରି ବାତାୟନ ରଖା ଯାଇଥିଲା । ପରେ ସ୍କୁଲର ବାତାୟନ ଅନୁକୃତ ହେଲା ଲୋକଙ୍କ ଘରମାନଙ୍କରେ । ସେଠି ଏବେ ସ୍କୁଲଘର ଆଉ ଲୋକଙ୍କ ଘରମାନଙ୍କ ଭିତରେ କିଛି ପ୍ରଭେଦ ନାହିଁ—ଦୁଇ କିସମର ଘରହିଁ ସ୍ଥାନୀୟ ଉପାଦାନରେ ସାଧାସିଧା ଧରଣରେ ତିଆରି । ସେ ଅଞ୍ଚଳରେ ଲୋକଙ୍କର ଦୈନନ୍ଦିନ ଖାଦ୍ୟ ଯାହା, କାନେ ସ୍କୁଲ କଲେଜମାନଙ୍କରେ ସେଇୟା ଖିଆଯାଏ । କିନ୍ତୁ ଖାଇବା ଓ ରନ୍ଧିବାରେ ଏଇ ସରଳତାକୁ ଗ୍ରହଣ ଦେଲେ, କାନେ ସ୍କୁଲ ଓ କଲେଜ, ପାରିପାର୍ଶ୍ୱିକ ସମାଜଠାରୁ ଅଜ ସବୁଥିରେ ଭିନ୍ନ । ଅନ୍ୟ ସବୁ ବିଷୟରେ କାନେ ଅନୁଷ୍ଠାନଗୁଡ଼ିକ ପାରିପାର୍ଶ୍ୱିକ-ସମାଜରେ ଯାହା ନ ଥିଲା ବା ନାହିଁ, ତାହା ଏକତ୍ର କରି ବିତରଣ କରିବାକୁ ଚେଷ୍ଟା କରନ୍ତି—ଅର୍ଥାତ୍ ଜ୍ଞାନ, ସଭ୍ୟତା, ସ୍ୱାସ୍ଥ୍ୟ, ନୈତିକତା ଆଦି ।

ବର୍ତ୍ତମାନ ଏ ଅବସ୍ଥା ସଙ୍ଗେ ଆମ ଶିକ୍ଷାନୁଷ୍ଠାନମାନଙ୍କର ତୁଳନା କରାଯାଉ । ଆମ ଦେଶରେ ପିଲାଙ୍କ ଘର ଓ ପିଲାଙ୍କ ସ୍କୁଲ

ଏବଂ କଲେଜ ଭିତରେ ବିରାଟ ବ୍ୟବଧାନ । ଆମ ସ୍କୁଲ କଲେଜରେ ଯେଉଁ ଜ୍ଞାନ ବିତରଣ କରାଯାଏ, ଯେଉଁ ଲକ୍ଷ୍ୟ ଦିଗରେ ପିଲାଙ୍କୁ ପରିଚାଳିତ କରାଯାଏ, ଯେଉଁପରି ଭାବରେ ସେମାନେ ଦୈନନ୍ଦିନ ଜୀବନଯାପନ କରନ୍ତି, ଲେଖାପଢା ଶିଖନ୍ତି, ତାହା ପାରିପାର୍ଶ୍ୱିକ ସମାଜ ସଙ୍ଗେ ଏକାବେଳେ ସମ୍ପର୍କଚ୍ୟୁତ । ପିଲେ ପଢୁଥିବା ପାଠ ଗାଁର ଚଷା ବା ବଢେଇ ବା କମାରର କୌଣସି କାମରେ ଲାଗି ପାରିବ ନାହିଁ । ପିଲା କାହିଁକି ପଢୁଛି ତାର ବାପ ମା ବି ଜାଣନ୍ତି ନାହିଁ । ସେ ବି ଜାଣେନାହିଁ । କିନ୍ତୁ ଅଜ୍ଞାତସାରରେ ପିଲା, ମନ ଓ ଦେହରେ ଏପରି ବଢୁଛି ଯେ, ସେ ଆଉ ବାପ ମାଙ୍କ କର୍ମସ୍ଥଳକୁ ଫେରିବାକୁ ନାରାଜ ।

ଆମ ଦେଶରେ ସ୍କୁଲ ଓ ଘର ଭିତରେ ବ୍ୟବଧାନ, ପୁଣି ସ୍କୁଲ ଓ କଲେଜ ଭିତରେ ବ୍ୟବଧାନ । ଅଲଣ୍ ଲୟୁଡ୍‌ଙ୍କ ସ୍ଥାପିତ ସବୁ ପ୍ରାଇମେରୀ ଓ ହାଇସ୍କୁଲ ମାଳା, ତାଙ୍କର କଲେଜଟି ସହିତ ସମସୂତ୍ରରେ ଗ୍ରଥିତ । ସମସ୍ତେ ଏକ ଆଦର୍ଶରେ ଅନୁପ୍ରାଣିତ । ପ୍ରତିଷ୍ଠିତ ଲକ୍ଷ୍ୟ ଦିଗରେ ପିଲାଙ୍କୁ ପ୍ରାଇମେରୀ ସ୍କୁଲରୁ ତାଲିମ୍ ଦେବା ଆରମ୍ଭ କରାଯାଏ ଏବଂ ତାର ସମାପ୍ତି ହୁଏ ବିଶ୍ୱବିଦ୍ୟାଳୟର ପରେ ପିଲା ପୁଣି ଜନ୍ମମାଟିକୁ ଫେରି ଆସିବାରେ । ଅଲଣଙ୍କ କଲେଜ କେବଳ ଗୋଟିଏ ସାର୍ଟିଫିକେଟଦାୟିନୀ ଅନୁଷ୍ଠାନ ନୁହେଁ, ଏହା ଗୋଟିଏ ସମଗ୍ର ଜିଲାର, ସମଗ୍ର ଅଞ୍ଚଳର ହୃତପିଣ୍ଡ ସ୍ୱରୂପ । ଏହା ବର୍ତ୍ତମାନ କାନେଗୋଷ୍ଠୀ ଯୋଜନା କେନ୍ଦ୍ର । ସେ ଅଞ୍ଚଳର ସର୍ବବିଧ ଉନ୍ନତିର ଉତ୍ସ ହେଉଛି ଏହି କଲେଜ ।

ଆମର ଶିକ୍ଷାନୁଷ୍ଠାନ ଗୁଡ଼ିକ ଏହିପରି ଭାବରେ ଗୋଟିଏ ଗୋଟିଏ ବ୍ଲକ୍, ବଡ଼ ଅଞ୍ଚଳର ସର୍ବ-କେନ୍ଦ୍ର ହୋଇ ଠିଆ ନ

ହେଲା ପର୍ଯ୍ୟନ୍ତ ଯେତେ କମିଟି ଯେତେ ରିପୋର୍ଟ ବାହାର କରନ୍ତୁ ବା ଯେତେ ଅର୍ଥ ବ୍ୟୟିତ ହେଉ, ସେସବୁର କୌଣସି ଉଚିତ ସାର୍ଥକତା ଆସିବ ବୋଲି ମୁଁ ବିଶ୍ୱାସ କରୁ ନାହିଁ ।

ପ୍ରାୟ ପନ୍ଦର ବର୍ଷ ତଳେ ମୁଁ ମୋର Citizen Education ବା ନାଗରିକଶିକ୍ଷା ନାମକ ପୁସ୍ତକରେ ଯେଉଁ ଉଦାହରଣ ଦେଇଥିଲି, ତାହା ଏ ସଂପର୍କରେ ଆଲଶ୍‌ଙ୍କ କାନେଗୋଷ୍ଠୀ ଯୋଜନା ସଙ୍ଗେ ମିଳିଯାଉଥିବାରୁ ଏଠାରେ ଦେଶର ଶିକ୍ଷାନୁରାଗୀମାନଙ୍କୁ ପୁଣି ତାହା ସ୍ମରଣ କରାଇ ଦେଉଛି ।

ମୁଁ କହୁଥିଲି (ଏବଂ ଏବେ ବି କହୁଛି) ଯେ ଆଲଶଙ୍କ ଯୋଜନାରେ ନଅ ଜିଲ୍ଲାପରି ଆମର ପ୍ରତ୍ୟେକ ଜିଲ୍ଲାକୁ ଶିକ୍ଷାର ଗୋଟିଏ ସ୍ୱୟଂ-ସଂପୂର୍ଣ୍ଣ ଏକକ ଧରାଯାଉ । ଧର ପୁରୀଜିଲ୍ଲା । ଏହି ଜିଲ୍ଲାରେ ଶିକ୍ଷାବ୍ୟବସ୍ଥାକୁ ଗୋଟିଏ ପିରାମିଡ୍ ଆକାରରେ କଳ୍ପନା କରାଯାଉ । ଏହି ପିରାମିଡ୍‌ର ସର୍ବପ୍ରସାରୀ ମୂଳଦୁଆ ହେଲା ପ୍ରାଇମେରୀ ସ୍କୁଲ । ତା ପରେ କ୍ରମ-ସୂକ୍ଷ୍ମୀକୃତ ପରିମାଣରେ ଆସିବେ ମିଡ଼ିଲ-ସ୍କୁଲ, ତା ପରେ ହାଇସ୍କୁଲ, ସର୍ବୋଚ୍ଚ ଶୃଙ୍ଗରେ ହେବ କଲେଜ । ଏହି ସମଗ୍ର ପିରାମିଡ୍ ଗୋଟିଏ ଗଭୀର ସଂବନ୍ଧ-ଜଡ଼ିତ କୁଟୁମ୍ବ । ସର୍ବୋଚ୍ଚ ଶୃଙ୍ଗରେ ଥିବା କଲେଜର ପ୍ରିନ୍‌ସିପାଲ ଓ ଅଧ୍ୟାପକମାନଙ୍କର ନିବିଡ଼ ସମ୍ବନ୍ଧ ରହିବ ପ୍ରାଇମେରୀ ସ୍କୁଲ ସହିତ । ବସ୍ତୁତଃ ଜିଲାର ସର୍ବୋଚ୍ଚ ଶିକ୍ଷାନୁଷ୍ଠାନର ମୁଖ୍ୟ-କର୍ତ୍ତା, ଜିଲାର ସମଗ୍ର ଶିକ୍ଷା ବ୍ୟବସ୍ଥାର ସର୍ବୋଚ୍ଚ ପରିଚାଳକ ହେବା ଉଚିତ । ଏହାର ଫଳ ଏହି ହେବ ଯେ, ପ୍ରାଇମେରୀରୁ କଲେଜଯାଏ ପିଲାଏ ଗୋଟାଏ ଲକ୍ଷ୍ୟ, ଗୋଟାଏ ଆଦର୍ଶ, ଗୋଟାଏ ପଦ୍ଧତିରେ ଗଢ଼ିହୋଇ ଆସିବେ । କାନେବେ ସେଇଆ ହୋଇଛି । ଆମ ଦେଶରେ ଅଗା ବଗା ଖଗା, ତିନିହେଁ ତିନି ଅଲଗା । କଲେଜ

ଦେଉଛନ୍ତି ଦୋଷ ହାଇସ୍କୁଲକୁ, ହାଇସ୍କୁଲ ଦୋଷ ଦେଉଛନ୍ତି ପ୍ରାଇମେରୀକୁ, ପ୍ରାଇମେରୀ ବଙ୍କାବାରେ ଲଗିଛି ସରକାରକୁ । କାହାର କାହା ସଙ୍ଗେ ପରିଚୟ ବା ସମ୍ପର୍କ ନାହିଁ । ସମସ୍ତଙ୍କୁ ଏକାଠି କରି ଏକ ଲକ୍ଷ୍ୟ, ଏକ ଆଦର୍ଶରେ ଅନୁପ୍ରାଣିତ ଓ ପରିଚାଳିତ କରିବାର କୌଣସି ଅନୁଷ୍ଠାନ ନାହିଁ । ସେଥିରେ ପୁଣି ପ୍ରତି ସ୍କୁଲ ବା କଲେଜ, ନିଜ ନିଜର ପାରିପାର୍ଶ୍ୱିକ ସମାଜ ସହିତ ସମ୍ପର୍କହୀନ । ଏପରି ଅରାଜକ ଅବସ୍ଥାରେ ଫଳ ଯାହା ହେବାର କଥା ତାହା ହେଉଛି ।

ଦ୍ୱିତୀୟ କଥା ହେଉଛି ଜାପାନ ଅନୁଷ୍ଠାନର ଲକ୍ଷ୍ୟ । ଆମ ଦେଶର ସ୍କୁଲ, କଲେଜ ପରି ଜାପାନ ସ୍କୁଲ ବା କଲେଜ ସାର୍ଟିଫିକେଟ ଯୋଗାଡ଼ କରିବାପାଇଁ ବସା ଯାଇନାହିଁ । ଜାପାନ କଲେଜ ବା ସ୍କୁଲର ଲକ୍ଷ୍ୟ ହେଉଛି ସେଗୁଡ଼ିକ ଯେଉଁ ମାଟି ଉପରେ ଠିଆ ହେଲେ, ତାକୁର ଶ୍ରୀସଂପନ୍ନ ଓ ସମୃଦ୍ଧିବନ୍ତ କରିବା । ଜାପାନ ସ୍କୁଲ ବା କଲେଜରେ କେହି ଗିଲେ ବେତନ ଦିଅନ୍ତି ନାହିଁ । କିନ୍ତୁ ଅଭିଭାବକ ଲୟିବ୍ଙ୍କ ନିକଟରେ ପ୍ରତି ଛାତ୍ର ଓ ଛାତ୍ରୀକୁ ମୌଖିକ ପ୍ରତିଜ୍ଞା କରିବାକୁ ପଡ଼େ ଯେ ସେମାନେ ସ୍କୁଲ, କଲେଜ ବା ବିଶ୍ୱବିଦ୍ୟାଳୟର ପାଠ ଶେଷ କରି ଯେଉଁଦିନ ଯିବେ ସେଇ ଅନୁନ୍ନତ ଜନ୍ମମାଟିକୁ ଫେରି ଆସି ନିଜ ଶକ୍ତିଅନୁଯାୟୀ ନିଜ ଲୋକଙ୍କର ସେବା କରିବେ । ଏଇ ଅସାଧାରଣ ପ୍ରଥା ଯୋଗୁଁହିଁ ଅଳ୍ପକାଳ ଭିତରେ ଜାପାନ ଅଞ୍ଚଳର ମୁଖ ପରିବର୍ତ୍ତିତ ହୋଇ ପାରିଛି ଏବଂ ଅଭିଭାବକଙ୍କ ବିଦ୍ୟାଳୟଗୁଡ଼ିକ ପ୍ରକୃତରେ ନଷ୍ଟ ଜାତିର ହୃତପିଣ୍ଡ ହୋଇ ପାରିଛି । ଯେଉଁଠି ପୂର୍ବେ ଲୋକେ ନାଁ ଦସ୍ତଖତ୍ କରି ପାରୁ ନ ଥିଲେ, ସେଠି ଏବେ ଉତ୍କୃଷ୍ଟ ଶିକ୍ଷକ, ଶିକ୍ଷୟିତ୍ରୀ, ଡାକ୍ତର, ନର୍ସ, ଓକିଲ, ଇଂଜିନିୟର ମାଳମାଳ । ସେମାନେ ପୁଣି

ଆମ ସ୍ଥାପନରୁ ଦ, ରାଜନୈତିକ ବ୍ୟବସ୍ଥା ପରି ତାହାର ଲୋକ ବୁଝନ୍ତି, ସେମାନେ ସେଇ ଅସଭ୍ୟ ଅନୁନ୍ନତ ମାଟିରୁହିଁ ବାହାରିଛନ୍ତି ।

ଓଡ଼ିଶାର ଗୋଟିଏ ହେଲେ ମଫସଲ ହାଇସ୍କୁଲ ଯଦି ଏହି ଆଦର୍ଶ ଗ୍ରହଣ କରନ୍ତା ଓ ପିଲେ ସତ୍ୟ ରକ୍ଷା କରନ୍ତେ, ଯେପରି ତାନେର ଘ୍ଲକ କରୁଛନ୍ତି, ତାହେଲେ ଆଗାମୀ କୋଡ଼ିଏ ବର୍ଷ ଭିତରେ ଏ ଦେଶର ମଧ୍ୟ ଯେ ପ୍ରକୃତ ରୂପାନ୍ତର ଘଟନ୍ତା ଏଥିରେ କୌଣସି ସନ୍ଦେହ ନାହିଁ ।

ତୃତୀୟ କଥା ହେଲା ତାନେ ଅନୁଷ୍ଠାନମାନଙ୍କରେ ଟଙ୍କାରେ ଫିସ୍ ନିଆଯାଏ ନାହିଁ । ତେବେ କଣ, ଯେଉଁଛା ସେ ସେଠିକି ଯାଇ ପାରିବ ?

ଆଲଣ୍ ଲ୍ୟୁଡ୍ ଟଙ୍କାରେ ଫିସ୍ ନିଅନ୍ତି ନାହିଁ, ନିଅନ୍ତି ବୁଦ୍ଧି, ବିଚକ୍ଷଣତା, ସ୍ବଭାବ, ଚରିତ୍ର ପୁଣି ଶ୍ରମର । ଝିଅମାନେ ରନ୍ଧାବଢ଼ା ପରଷାପରଷି କାମ କରନ୍ତି, ପୁଅମାନେ କାଠ କଟା, ପାଣିବୁହା ଆଦି କରନ୍ତି । ଥିଲା ନ ଥିଲା ସବୁ ବାପାଏ ଦ୍ରବ୍ୟ ଆକାରରେ କିଛି କିଛି ସାହାଯ୍ୟ କରନ୍ତି । କିନ୍ତୁ ଅସଲ ଫିସ୍ ହେଉଛି ମାନସିକ ଓ ଶାରୀରିକ ଶକ୍ତି । ଏହାର ମାପ କାଠି ଅତି କଡ଼ । ପୁଣି ତାହା ପ୍ରତି କୌଣସି ଉପ୍ରୋଧ ନ ରଖି ତାହା ବ୍ୟବହାର କରାଯାଇ ଥାଏ । ସ୍କୁଲରେ ଯେଉଁମାନେ ନାଁ ଲେଖାଇବାକୁ ଆସନ୍ତି, ସେଥିରୁ ଦୁଇ ତୃତୀୟାଂଶ ଘ୍ଲଡ଼ ପଳାନ୍ତି—ପରୀକ୍ଷା ଏତେ କଠିନ ପଡ଼େ । ସ୍କୁଲରୁ କଲେଜକୁ ଯିବାପାଇଁ ଶତକରା ଦଶରୁ ବେଶି ଉପଯୁକ୍ତ ବିବେଚିତ ହୁଅନ୍ତି ନାହିଁ ।

ଆମ ଦେଶରେ ଏ ମାନଦଣ୍ଡ କାହିଁ ? ଶିକ୍ଷାର ଅଧୋଗତି ଏପରି ହେଲାଣି ଯେ ବିଶ୍ୱବିଦ୍ୟାଳୟର ଉଚ୍ଚତମ ଉପାଧିଧାରୀ ମଧ୍ୟ

ଚିଠିଟିଏ ଲେଖିଲେ ସେଥିରେ ବର୍ଣ୍ଣାଶୁଦ୍ଧି ରହୁଛି; ତେଣେ ତଥାକଥିତ ଶିକ୍ଷିତ ଲୋକ ବେକାର ବସୁଛନ୍ତି । ଏ ଦୁଇ ବ୍ୟାପାର ଯେ ପରସ୍ପର ସହିତ ଘନିଷ୍ଠଭାବରେ ସମ୍ପୃକ୍ତ ଏହା ଯେ କୌଣସି ବୁଦ୍ଧିମାନ ଲୋକ ଦେଖି ପାରିବ । ଶିକ୍ଷା ଓ ପରୀକ୍ଷାର ମାନଦଣ୍ଡ କାନେ ପର ଉଚ୍ଚ ରଖାଯାଉ, ଦେଖିବ,ଦେଶରେ ଶିକ୍ଷିତ-ବେକାର ସମସ୍ୟା କଥା ଶୁଣାଯିବ ନାହିଁ । ଗୋଟିଏ ଜିଲ୍ଲା ବା ଅଞ୍ଚଳକୁ ଶିକ୍ଷା ବ୍ୟବସ୍ଥାର ଗୋଟିଏ ଏକକ କରି ଧରି ହେଲେ ସେହି ଅଞ୍ଚଳ ବା ଜିଲ୍ଲାର ଆବଶ୍ୟକତାନୁଯାୟୀ ଅର୍ଥଶାସ୍ତ୍ରର ପ୍ରୟୋଜନ-ଅପ୍ରୟୋଜନ ରୀତିରେ ହାଇସ୍କୁଲ ଓ କଲେଜରୁ ପିଲେ ବାହାରନ୍ତେ, ଆବଶ୍ୟକତାନୁଯାୟୀ ଡାକ୍ତର, ଇଞ୍ଜିନିୟର, ନର୍ସ ତିଆରି ହୋଇ ଆସନ୍ତେ, ବେକାର ସମସ୍ୟା ଦେଖାଯାନ୍ତା ନାହିଁ । ଅଥଚ ଯେ କେତୋଟି ଶିକ୍ଷିତ ହୋଇ ବାହାରି ଯେଉଁଠି ଯେଉଁ ଭାବରେ କାମ କରନ୍ତେ ସେଗୁଡ଼ିକ ପ୍ରତ୍ୟେକେ କାହାର ସ୍ତମ୍ଭ ବୋଲି ଗଣା ହୁଅନ୍ତେ । **ଅଲ୍‌ଶଙ୍କ ଗ୍ଲଣ୍ଡଗ୍ଲଣୀ** ଏହି ଧରଣର ।

ଚତୁର୍ଥ କଥା ଦେଖିବାର ଏହି ଯେ, କାନେ ଅନୁଷ୍ଠାନମାନଙ୍କରେ ବଞ୍ଚିବାର ସାରଲ୍ୟ ଓ ଶ୍ରମ-ସମ୍ମାନ । ଧନୀ ବା ଗରିବ କେହି ଫିସ୍ ଦେବେନାହିଁ । ଫିସ୍ କେବଳ ବୁଦ୍ଧି, ଚରିତ୍ର ଓ ଶ୍ରମଶକ୍ତିର । ପୁଣି ଧନୀଦରିଦ୍ର ନିର୍ବିଶେଷରେ ସମସ୍ତେ ଶ୍ରମ କରିବେ ଓ ସମ-ବସ୍ତ୍ର ହୋଇ ଚଳିବେ । ସ୍କୁଲର ନିର୍ଦ୍ଧାରିତ-ବସ୍ତ୍ର ଛଡ଼ା ଅନ୍ୟ ବସ୍ତ୍ର ମଧ୍ୟ ବ୍ୟବହାର କରି ପାରିବେ ନାହିଁ ।

ହାଇସ୍କୁଲ ସଙ୍ଗେ ଶିକ୍ଷକ ଓ ଇନ୍‌ସ୍ପେକ୍ଟର ଭାବରେ ସମ୍ପୃକ୍ତ ଥିଲାବେଳେ ମୁଁ ଏ ଦିଗରେ ସାମାନ୍ୟ ପରୀକ୍ଷା କରିଥିଲି । ମୋର ମନେ ଅଛି ମୁଁ ଇନ୍‌ସ୍ପେକ୍ଟରଭାବରେ ସ୍କୁଲମାନଙ୍କ ସର୍କ୍ୟୁଲର

ଦେଇଥିଲି ଯେ ସ୍କୁଲ ଛାତ୍ରାବାସମାନଙ୍କରେ କୌଣସି ଧନୀ ପିଲାକୁ ଅଲଗାଭାବରେ ଖାଇବାକୁ, ସିଲ୍‌କ ବା ଜୋତା ପିନ୍ଧିବାକୁ ଦିଆଯିବା ଉଚିତ ହେବ ନାହିଁ । ଛାତ୍ରାବାସରେ ସମସ୍ତେ ସମାନ ଅବସ୍ଥାରେ ରହିବେ; ସମସ୍ତେ ଯଥାଶକ୍ତି ଅଙ୍ଗ-ଶ୍ରମ ଦ୍ୱାରା ସମୂହ ପରିଚାଳନାରେ ସହାୟତା କରିବେ । ମୋର ନିକଟରେ ପ୍ରକାଶିତ 'ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ' ପୁସ୍ତକରେ ମଧ୍ୟ ମୁଁ ଏଇସବୁ ଉପରେ ଜୋର ଦେଇଛି । ଶିକ୍ଷକ ଓ ପରିଦର୍ଶକମାନେ ଏଆଡ଼କୁ ଦୃଷ୍ଟି ଦେଲେଇ ଅନେକ ପରିବର୍ତ୍ତନ ଆପେ ଆପେ ଆସିଯାନ୍ତା ।

ପଞ୍ଚମ କଥା ହେଉଛି ଅଲଗ୍ ଲସୂଡ଼୍‌ଙ୍କ ସ୍କୁଲ ଓ କଲେଜ କପର ସ୍ୱାଧୀନ ଭାବରେ ସ୍ୱୟଂ-ନିର୍ଭର ହୋଇ ବଢ଼ି ଚାଲିଛି । ଅଲଗ୍ ପିଲାଙ୍କଠାରୁ ବେତନ ନିଅନ୍ତି ନାହିଁ, ଏଣେ ପୁଣି ସରକାରଙ୍କଠାରୁ ମଧ୍ୟ କୌଣସି ଗ୍ରାଣ୍ଟ୍ ନିଅନ୍ତି ନାହିଁ । ଅଥଚ ତାଙ୍କ ପିଲାଙ୍କ ପାଇଁ ଆମେରିକାର ସର୍ବଶ୍ରେଷ୍ଠ ବିଶ୍ୱବିଦ୍ୟାଳୟମାନଙ୍କର ଦ୍ୱାର ଉନ୍ମୁକ୍ତ । ତାଙ୍କ ସ୍କୁଲ କଲେଜର ପାଠ୍ୟ-ନିର୍ଘଣ୍ଟ ସେ ପାରିପାର୍ଶ୍ୱିକ ଗୃହଦା ଅନୁସାରେ ନିଜେ ତିଆରି କରନ୍ତି । ପାରିପାର୍ଶ୍ୱିକ ଗୃହଦା ଉପରେ ଆଖି ରଖିବାରୁ, ପରିପାର୍ଶ୍ୱିକ ଲୋକେ ତାଙ୍କ ସ୍କୁଲ କଲେଜକୁ ନିଜର ବୋଲି ମନେ କରୁଛନ୍ତି ଏବଂ ସେଇମାନଙ୍କର ସହାୟତାରେହିଁ । ସ୍କୁଲଗୁଡ଼ିକ ସେଇଠାର ମାଟିରୁ ଗଛ ଉଠିଲା ପରି ସ୍ୱାଭାବିକ ଭାବରେ ବଢ଼ି ଉଠିଛନ୍ତି । ଆମ ଦେଶରେ ସ୍କୁଲଘର, ଶିକ୍ଷକ, ସିଲାବସ୍, ପାଠ୍ୟବସ୍ତୁ, ପରୀକ୍ଷା—ସବୁ ଉପରୁ ଲଦା ହେଉଛି । ତେଣୁ ସ୍କୁଲ ସବୁର ଚେର ମାଟିଭିତରେ ପଶିପାରୁନାହିଁ । ପ୍ରତ୍ୟେକ ସ୍କୁଲ ଏପରିକି ପ୍ରାଇମେରୀ ସ୍କୁଲକୁ ମଧ୍ୟ ପୂରା ସ୍ୱାଧୀନତା ଦେବାପାଇଁ ମୁଁ ବହୁବର୍ଷ

ହେଲା ମତ ପ୍ରକାଶ କରି ଆସୁଛୁ, କିନ୍ତୁ କେହି ଶୁଣିବାକୁ ନାହିଁ । ତାହା ନ ହେଲା ପର୍ଯ୍ୟନ୍ତ ସ୍କୁଲ ଓ ସ୍କୁଲ ଶିକ୍ଷକ ଦେଶ ଓ ଜାତି ସେମାନଙ୍କଠାରୁ ଯାହା ଆଶା କରୁଛି, ତାହା ସେମାନେ କେବେ-ହେଲେ ପୂରା ଭାବରେ ଦେଇ ପାରିବେ ନାହିଁ ।

ଷଷ୍ଠ କଥା ହେଉଛି ଏଇ ଯେ କାନେ କଲେଜ କର୍ତ୍ତୃପକ୍ଷ ଯେଉଁ ଗ୍ରାହକଙ୍କଠାରେ ନେତୃତ୍ୱର ଭବିଷ୍ୟତ ଦେଖିପାରନ୍ତି, ସେମାନଙ୍କର ଶିକ୍ଷାର ସମସ୍ତ ଭାର ସେମାନେ ନେଇଥାନ୍ତି । ଏଇପରି ଭାବରେହିଁ ସେ ଅଞ୍ଚଳର ଡାକ୍ତର, ନର୍ସ, ଇଞ୍ଜିନିୟର, ଓକିଲ ତିଆରି ହେଉଛନ୍ତି । ସେ ସବୁର ଦୃଷ୍ଟାନ୍ତ ପୂର୍ବରୁ ଦିଆଯାଇଛି ।

ଏଇ ଆଲୋଚନାରୁ ଯାହା ତାତ୍ପର୍ଯ୍ୟ ବାହାରୁଛି ଏବଂ ଯାହା ମୁଁ ମନେ କରୁଛି ଯେ ଆମ ଶିକ୍ଷା ବ୍ୟବସ୍ଥାରେ ପ୍ରବର୍ତ୍ତିତ ହେବା ଏକାନ୍ତ ଉଚିତ ସେଗୁଡ଼ିକ ଏଇ—

(୧)—ପ୍ରତ୍ୟେକ ଶିକ୍ଷାନୁଷ୍ଠାନ (ପ୍ରାଇମେରି ବା ହାଇସ୍କୁଲ ବା କଲେଜ) ଗୋଟିଏ ଗୋଟିଏ ଛୋଟ ବଡ଼ ନିର୍ଦ୍ଦିଷ୍ଟ ଅଞ୍ଚଳର ସାମୂହିକ ଜୀବନର କେନ୍ଦ୍ର ରୂପେ ବିବେଚିତ ଓ ବ୍ୟବସ୍ଥିତ ହେବେ । ପୁଣି ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଯେତେ ପ୍ରକାର ଶିକ୍ଷାନୁଷ୍ଠାନ ଥିବ, ସମସ୍ତଙ୍କର ସମନ୍ୱୟ କରି ସମଗ୍ର ଅଞ୍ଚଳର ଶିକ୍ଷା ବ୍ୟବସ୍ଥାକୁ ଗୋଟିଏ ଏକକ ରୂପେ ଧରିଯାଇ ଗୋଟିଏ ଲକ୍ଷ୍ୟ ଓ ଗୋଟିଏ ଆଦର୍ଶରେ ସେଗୁଡ଼ିକୁ ଅନୁପ୍ରାଣିତ କରାଯିବ ।

(୨)—ପ୍ରତ୍ୟେକ ଶିକ୍ଷାନୁଷ୍ଠାନକୁ ଯଥାସମ୍ଭବ ସ୍ୱାଧୀନ ଓ ସ୍ୱୟଂସମ୍ପୂର୍ଣ୍ଣ ଭାବରେ ବଢ଼ିବାକୁ ଦିଆଯିବ । ଶିକ୍ଷକମାନେ ପୂର୍ଣ୍ଣ

ସ୍ୱାଧୀନ ହେବେ । କେଉଁ ପାଠ୍ୟପୁସ୍ତକ ଗ୍ରହଣ କରିବେ ବା ନ କରିବେ, ନିଜ ସିଲବସ୍ ନିଜେ ଗଢ଼ି ପାରିବାରେ ବା ଶିକ୍ଷାବିଭାଗର ସିଲବସ୍‌ରେ ସ୍ଥାନୀୟ ପ୍ରୟୋଜନ ଅନୁଯାୟୀ ଅଦଳ ବଦଳ କରିବାରେ ସେମାନଙ୍କର ପୂର୍ଣ୍ଣ ସ୍ୱାଧୀନତା ରହିବା ଉଚିତ ।

(୩)—କୌଣସି ହେଲେ ଛାତ୍ର ବା ଛାତ୍ରୀଙ୍କଠାରୁ ବେତନ ନିଆଯିବ ନାହିଁ—ଶିକ୍ଷାର କୌଣସି ସ୍ତରରେ । ଶିକ୍ଷାନୁଷ୍ଠାନରେ ପ୍ରବେଶର ଏକମାତ୍ର ଫିସ୍ ହେବ, ବୁଦ୍ଧି ଓ ଚରିତ୍ରର ଉତ୍କର୍ଷ । ପାଠର ମାନଦଣ୍ଡ ବରାବର ଉଚ୍ଚ ରହିବ, ଯେପରି କି ତାହା ଯେକୌଣସି ସ୍ଥାନରେ ସମ୍ମାନ ପାଇବ ।

(୪)—ଶିକ୍ଷାନୁଷ୍ଠାନମାନଙ୍କରେ ଦୈନନ୍ଦିନ ଜୀବନ ପରିଚାଳିତ ହେବ ଛାତ୍ରଛାତ୍ରୀଙ୍କ ଦୈହିକ ଶ୍ରମ ଉପରେ । ସଂଯମ ଓ ସାରଲ୍ୟ ବିଦ୍ୟାଳୟ ଜୀବନର ପ୍ରଧାନ ଗୀତ ହେବ । ଧନୀ ଦରିଦ୍ର ସମସ୍ତେ ଏକ ଖାଦ୍ୟ ଖାଇବେ, ଏକ ବସନ ପିନ୍ଧିବେ ଓ ଏକ ଜୀବନ ଯାପନ କରିବେ ।

(୫)—ଯେଉଁମାନେ ବୁଦ୍ଧି, ବିଦ୍ୟା, ଚରିତ୍ରରେ ଉତ୍କୃଷ୍ଟ ବିବେଚିତ ହେବେ କର୍ତ୍ତୃପକ୍ଷ ସେମାନଙ୍କର ଉଚ୍ଚଶିକ୍ଷାର ସମସ୍ତ ଖର୍ଚ୍ଚ ବହନ କରିବେ । ପୁଣି ପ୍ରତି ଛାତ୍ର ଓ ଛାତ୍ରୀଠାରୁ ପ୍ରତିଶ୍ରୁତି ନିଆଯିବ ଯେ ସେମାନେ ନିଜ ମାଟିକୁ ଶ୍ରୀମନ୍ତ କରିବା ପାଇଁ ଯଥାଶକ୍ତି ଚେଷ୍ଟା କରିବେ ।

ଆମ ଦେଶରେ ବର୍ତ୍ତମାନ ଶିକ୍ଷାପଦ୍ଧତିର ପରିବର୍ତ୍ତନ ପାଇଁ ଚେଷ୍ଟା ଚାଲିଛି । ପୁଣି ଶ୍ରେଣୀହୀନ ଜନମଙ୍ଗଳକାରୀ ରାଷ୍ଟ୍ର ଆଦର୍ଶ ବୋଲି ବାରମ୍ବାର କୁହାଯାଉଛି । ଏହି ନୀରବ ବିପ୍ଳବରେ

ଯେଉଁମାନେ ସଂପୃକ୍ତ ସେହିମାନଙ୍କ ଦୃଷ୍ଟିକୁ ଅପେକ୍ଷକାରେ ଏକ ଅନୁନ୍ନତ ଅଞ୍ଚଳ ଗୋଟିଏ ହାଇସ୍କୁଲ୍ ଓ କଲେଜ ଦେଇ କିପରି ରୂପାନ୍ତର ପାଇଛି, ତାହା ଆଣିଦେବା ହିଁ ଏହି ଆଲୋଚନାର ଏକମାତ୍ର ଉଦ୍ଦେଶ୍ୟ । ପୁଣି ବର୍ତ୍ତମାନ ଗ୍ରାମସେବକ ଓ ଗ୍ରାମ-ସେବିକାଗଣ ଦେଶର ଗୃହଅଙ୍ଗ ବାଣ୍ଟି ହୋଇ ଯାଉଛନ୍ତି । ସେମାନେ ଧୈର୍ଯ୍ୟଚ୍ୟୁତ, ପଥଚ୍ୟୁତ ବା ହତାଶ ହେଲ ବେଳେ ଦରିଦ୍ରା ରୁଗ୍ଣା ଏକାକିନୀ ନାରୀ ଆଲିସ୍ ଲସୁଙ୍କର ଦୃଷ୍ଟାନ୍ତ ସେମାନଙ୍କୁ କିଛି ହେଲେ ମାନସିକ ବଳ ଓ ଉତ୍ସାହ ଦେଇପାରେ ବୋଲି ମୋର ବିଶ୍ୱାସ । ବସ୍ତୁତଃ ଜଇଲସ୍ମନ୍ ଓଟନ୍‌ଙ୍କ ବାହାର ତର୍ଜମା କରିବାକୁ ଗଲି ସେହି ପଲ୍ଲୀକର୍ମୀମାନଙ୍କ ଉଦ୍ଦେଶ୍ୟରେ ।

---

**ସମାପ୍ତ**

ମୁଦ୍ରାକର—ଶ୍ରୀ ଘନଶ୍ୟାମ ଦାଶ, ନିଜ ଷ୍ଟୋର୍ସ ପ୍ରେସ୍, ବ୍ରହ୍ମପୁର